# ଶହୀଦ ଲକ୍ଷ୍ମଣ ନାୟକ

ଦାଶରଥି ନନ୍ଦ



ନ୍ୟୁ ବୁକ୍ ଷ୍ଟୋର

ବ୍ରହ୍ମପୁର

ଶହୀଦ ଲକ୍ଷ୍ମଣ ନାୟକ, ଲେଖକ : ଶ୍ରୀ ଦାଶରଥି ନନ୍ଦ, ପ୍ରକାଶକ : ଭାସ୍କରଚନ୍ଦ୍ର ପାତ୍ର, ବିଜୟ ବୁକ୍ ଷ୍ଟୋର, ବ୍ରହ୍ମପୁର-୧, ସ୍ୱତ୍ୱ : ଶ୍ରୀମତୀ ମଞ୍ଜୁଲତା ନନ୍ଦ, ପ୍ରଥମ ପ୍ରକାଶ : ଦୋଳ ପୂର୍ଣ୍ଣିମା, ୧୯୭୭, ଦ୍ୱିତୀୟ ପ୍ରକାଶ : ମାଘ ପୂର୍ଣ୍ଣିମା, ୧୯୮୧, ତୃତୀୟ ପ୍ରକାଶ : ଶ୍ରୀ ଗୁଣ୍ଡିଚା, ୧୯୮୪, ଚତୁର୍ଥ ପ୍ରକାଶ : ଅକ୍ଷୟ ତୃତୀୟା, ୧୯୮୬, ପଞ୍ଚମ ପ୍ରକାଶ : ଗଣେଶ ଚତୁର୍ଥୀ, ୧୯୯୦, ଷଷ୍ଠ ପ୍ରକାଶ : ୧୯୯୮, ମୁଦ୍ରଣ : ସନ୍ତୋଷ ପ୍ରିଣ୍ଟର୍ସ, ପୁରୁଣା ବ୍ରହ୍ମପୁର, ବ୍ରହ୍ମପୁର-୯

ମୂଲ୍ୟ : ପଚିଶ ଟଙ୍କା

ବନ୍ଧାଇ : ପଞ୍ଚତିରିଶ ଟଙ୍କା



**SAHID LAXMAN NAYAK**, Writer : **Sri Dasarathi Nanda**, Publisher : **Bhaskar Chandra Patro,** Bijoy Book Store, Brahmapur-1, Copyright : **Srimati Manjulata Nanda**, First Edition : **Dola Purnima 1977,** Second Edition : **Magha Purnima 1981**, Third Edition : **Sri Gundicha 1984**, Fourth Edition : **Akshaya Trutiya 1986,** Fifth Edition: **Ganesh Chaturthi 1990**, Sixth Edition : **1998** Printed at **Santosh Printers,** Old Brahmapur, Brahmapur-9.

Price : **Rupees Twentyfive**

Bound : **Rupees Thirtyfive**

I. S B N. : 81-85759-19-7

୧୯୩୪ ସାଲରେ ଷଷ୍ଠ ଶ୍ରେଣୀରେ ପଢ଼ୁଥିଲାବେଳେ ମହାତ୍ମା ଗାନ୍ଧୀଙ୍କ ଡାକରାରେ ପାଠ ଛାଡ଼ି କଂଗ୍ରେସରେ ମୁଁ ଯୋଗ ଦେଲି । ୧୯୩୯ରେ ମୋତେ ତେନ୍ତୁଳିଗୁମ୍ମା ଯାଇ ମାଥିଲି ପ୍ରାଥମିକ କଂଗ୍ରେସର ସଭାପତି ଶ୍ରୀ ଲକ୍ଷ୍ମଣ ନାୟକଙ୍କ ନିର୍ଦ୍ଦେଶ ଅନୁସାରେ କାମ କରିବାକୁ କୁହାଗଲା ।

ସେ ଦିନଠୁ ମୁଁ ଲକ୍ଷ୍ମଣ ନାୟକଙ୍କ ସହିତ ଗୋଟିଏ ପରିବାରର ଲୋକଭଳି ଚାଲି ଆସିଥିଲି, ୧୯୪୨ ଅଗଷ୍ଟ ବିପ୍ଳବ ପରେ ଯାବଜ୍ଜୀବନ କାରାଦଣ୍ଡ ପର୍ଯ୍ୟନ୍ତ । ତାଙ୍କର ବ୍ୟକ୍ତିଗତ ଜୀବନ ଓ ସାଙ୍ଗଠନିକ କାର୍ଯ୍ୟାବଳୀ ସହିତ ମୁଁ ଘନିଷ୍ଠ ଭାବେ ଜଡ଼ିତ ଥିଲି । ସେ ଥିଲେ ଜଣେ ବିରାଟ ନେତା, ଦରିଦ୍ର ବନ୍ଧୁ, ଅସୀମ ସାହସ, ବୀରତ୍ୱ ଓ ନିଷ୍ଠାର ପ୍ରତୀକ ।

୧୯୪୨ ଅଗଷ୍ଟ ୨୧ ତାରିଖ ମାଥିଲି ଥାନା ପାଖରେ ବିକ୍ଷୋଭ କରିବା ପାଇଁ ଲକ୍ଷ୍ମଣ ନାୟକଙ୍କ ସହିତ ମୁଁ ମଧ୍ୟ ଯାଇଥିଲି । ସେ ଦିନର ସମଗ୍ର ଘଟଣା ସହିତ ମୁଁ ଜଡ଼ିତ । ଯେଉଁ ୫୪ ଜଣଙ୍କ ବିରୁଦ୍ଧରେ ବିଚାର ଚାଲିଲା ମୁଁ ସେମାନଙ୍କ ଭିତରୁ ଅନ୍ୟତମ । ମୁଁ ଜାଣେ ଅଗଷ୍ଟ ୨୧ ତାରିଖରେ ଯାହା ପ୍ରକୃତରେ ଘଟିଥିଲା ସେସବୁ ପୋଲିସ୍ ରିପୋର୍ଟରେ ଭିନ୍ନ ଅଛି । ଇଂରେଜ ସରକାରଙ୍କ ବିଚାରଣାରେ ଲକ୍ଷ୍ମଣଙ୍କୁ ଫାଶୀ ଦିଆଗଲା ଏବଂ ଆମେ ଯାବଜ୍ଜୀବନ କାରାଦଣ୍ଡ ଭୋଗ କଲୁ । ଅବଶ୍ୟ ସ୍ୱାଧୀନତା ପରେ ଆମେ ମୁକ୍ତ ହେଲୁ ।

ବ୍ୟକ୍ତିଗତ ଭାବେ ଲକ୍ଷ୍ମଣ ଥିଲେ ମୋର ବଡ଼ଭାଇ ପରି । ଚିରଦିନ ପାଇଁ ତାଙ୍କୁ ହରାଇ ମୁଁ ମ୍ରିୟମାଣ ହୋଇପଡ଼ିଲି ।

ମୁଁ କେବେ ଆଶା କରି ନଥିଲି ଲକ୍ଷ୍ମଣ ନାୟକଙ୍କର ଏକ ଜୀବନୀ ଲେଖାଯିବ କାରଣ ଆଦିବାସୀ ମାନେ ହିଁ ସହଜେ ଚିର ଉପେକ୍ଷିତ; କିନ୍ତୁ ଅଳ୍ପ ଦିନ ତଳେ ଶ୍ରୀ ଦାଶରଥି ନନ୍ଦ ଅଗ୍ରନକ ଭାବେ ମୋତେ ତାଙ୍କ ବିଷୟରେ ପଚାରିଲେ। ଘଣ୍ଟା ଘଣ୍ଟା ଧରି ସେ ମୋଠାରୁ ଲକ୍ଷ୍ମଣଙ୍କ ବିଷୟରେ ଶୁଣିଛନ୍ତି। ଲକ୍ଷ୍ମଣଙ୍କ ପାରିବାରିକ ଜୀବନ, ଗ୍ରାମ୍ୟ ପୁନର୍ଗଠନ, ସାଙ୍ଗଠନିକ କାର୍ଯ୍ୟ, ବକ୍ତୃତା, ୧୯୪୨ ମାଥିଲି ଥାନାର ବିକ୍ଷୋଭ, ତାର ପୂର୍ବ ପ୍ରସ୍ତୁତି ଗୁଳିକାଣ୍ଡ ଓ ତତ୍‌ସମ୍ପର୍କୀୟ ସମସ୍ତ ଘଟଣା ମୁଁ ଜାଣିବା ପ୍ରକାରେ ହିଁ ସେ ବହିଟିରେ ଉଲ୍ଲେଖ କରିଛନ୍ତି।

ବହିଟି ପଢ଼ିଲାବେଳେ ପୂର୍ବର ଅନେକ ସ୍ମୃତି ମୋ ମନରେ ଜାଗରିତ ହୁଏ। ତାଙ୍କର ରୂପ, କଥା, ଗୀତ, ଗୁଳିକାଣ୍ଡ ଅକଥନୀୟ ଅତ୍ୟାଚାର ଓ ମର୍ମନ୍ତୁଦ ଯନ୍ତ୍ରଣା ଭିତରେ ସେ କହୁଥିବା "ଭାଇମାନେ ଏ ଶାନ୍ତ ରୁହ, ପୋଲିସ୍ ଉପରକୁ ହାତ ଟେକ ନାହିଁ" ଆଜି କେତେ ଦୃଶ୍ୟ ମୋ ଆଖି ଆଗରେ ନାଚି ଉଠୁଛି।

ଲକ୍ଷ୍ମଣ ନାୟକଙ୍କ ବ୍ୟକ୍ତିତ୍ୱ ଏପରି ଯେ ତାଙ୍କର କାର୍ଯ୍ୟ ଓ କଥାରେ ଅନୁପ୍ରାଣିତ ହୋଇ ଆମେ ପିଲାଦିନରୁ ଦେଶର ସ୍ୱାଧୀନତା ପାଇଁ ସର୍ବସ୍ୱ ତ୍ୟାଗ କରିଥିଲୁ। ଏପରିକି ଜୀବନକୁ ମଧ୍ୟ ପାଣି ଛଡ଼ାଇ ଦେଇଥିଲୁ। ଏବେ ଦେଶ ସ୍ୱାଧୀନ ହେଲା କିନ୍ତୁ ଦେଶରୁ ଦାରିଦ୍ର୍ୟ ଲୋପ ପାଇ ନାହିଁ। ଅନେକ କାମ କରିବାକୁ ବାକି ପଡ଼ିଛି। ତା' ପାଇଁ ଦରକାର ପଡ଼ିବ ସେହି ପୂର୍ବପରି ସାହସ, ଦମ୍ଭ ଓ ତ୍ୟାଗ।

ମୋର ଆଶା ବହିଟି ପଢ଼ି ଏ ଦେଶର ଅଗଣିତ ବାଳକ, ବାଳିକା ଓ ନରନାରୀ ଲକ୍ଷ୍ମଣଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ କଠୋର ପରିଶ୍ରମ ଓ ବୀରତ୍ୱ ସହକାରେ ଦଳିତ ଜନତାର ସେବାରେ ଲାଗି ପଡ଼ିବେ।

କୃଷ୍ଣଚନ୍ଦ୍ର ବିଷୋୟୀ
ତା ୧୪-୧୦-୧୯୭୫
ବିଜୟା ଦଶମୀ
ଜୟପୁର (କୋରାପୁଟ)

# ପଦେ ଅଧେ

ପିଲାଦିନରୁ ମୁଁ ସମଗ୍ର ଆଦିବାସୀ ସମାଜର ମଉଡ଼ମଣି, ଅସାଧାରଣ ସଙ୍ଗଠକ, ମାତୃଭୂମିର ପରମ ପୂଜକ, ମହାତ୍ମା ଗାନ୍ଧୀଙ୍କ ପଟ୍ଟଶିଷ୍ୟ, ଶହୀଦ ବୀର ଲକ୍ଷ୍ମଣ ନାୟକଙ୍କ ନାଁ ଶୁଣି ଆସିଛି କିନ୍ତୁ କେବେ ତାଙ୍କୁ ଦେଖି ନାହିଁ । ଦେଖିବାର ବି ଅବକାଶ ନାହିଁ, କାରଣ ମୋର ଜନ୍ମ ବର୍ଷରେ ସେ ଶହୀଦ ହୋଇଥିଲେ ।

ପିଲା ଦିନେ ଆମେ ବୋଲୁଥିବା ସେଇ ପ୍ରିୟ ଗୀତଟି, ଯାହା ଏବେ ବି କୋରାପୁଟରେ ପିଲାମାନେ ଗାଆନ୍ତି, ମନେ ପଡ଼େ—

"ଲକ୍ଷ୍ମଣ ନାୟକ ହେ ଲକ୍ଷ୍ମଣ ନାୟକ,
ଦେଶ ଲାଗି ଫାଶୀ ଖୁଣ୍ଟେ
ଝୁଲିଲ ବେକ ।
ରଖିଗଲ ଓଡ଼ିଶାର ଟେକ ।"

ତାଙ୍କର ଗୌରବପୂର୍ଣ୍ଣ କାର୍ଯ୍ୟାବଳୀ ବଡ଼ବଡ଼ିଆଙ୍କଠୁ ଶୁଣି ଆମେ ଭାବୁଥିଲୁ ଲକ୍ଷ୍ମଣ ନାୟକ ଜଣେ କାଳ୍ପନିକ କିମ୍ବଦନ୍ତୀର ନାୟକ । କିନ୍ତୁ ପରେ ଜାଣିପାରିଲୁ ଯେ ସେପରି ଏକ ବୀର ଆମ ଓଡ଼ିଶାର ବଣ-ପର୍ବତ ଘେରା କୋରାପୁଟରେ ପ୍ରକୃତରେ ଜନ୍ମ ହୋଇଥିଲେ । ତାଙ୍କ ବିଷୟରେ ସବୁକିଛି ଜାଣିବା ପାଇଁ ମନରେ ପ୍ରବଳ ଇଚ୍ଛା ଥିଲା । କିନ୍ତୁ ତାହା ଚରିତାର୍ଥ ହୋଇପାରୁ ନଥିଲା ।

ଲକ୍ଷ୍ମଣ ନାୟକଙ୍କ ବ୍ୟକ୍ତିଗତ ସମ୍ପର୍କରେ ଆସିଥିବା ଅନେକ ଲୋକ ଅଦ୍ୟାବଧି ଅଛନ୍ତି, କିଏ କେଉଁଠି । ତାଙ୍କର ବିଭିନ୍ନ ସମୟର

କାର୍ଯ୍ୟକଳାପ ଏକଠି କଲେ ଗୋଟିଏ ସୁନ୍ଦର ଜୀବନୀ ହୁଅନ୍ତା । ଏହା ନିତାନ୍ତ ଜରୁରୀ କାରଣ ସେମାନଙ୍କର ସଂଖ୍ୟା କ୍ରମେ ବହୁତ କମିଗଲାଣି ସଂସାରର ନିୟମ ଅନୁସାରେ । ଶୁଣିଥିଲି ମଧ୍ୟ ଏ ଦିଗରେ କେତେଜଣ ଉଦ୍ୟମ କରୁଛନ୍ତି । ଆଶା ବାନ୍ଧିଥିଲି, ସେପରି ଏକ ଉଦ୍ୟମ ସାର୍ଥକ ହେଲେ କେବଳ ମୁଁ କାହିଁକି ଦେଶରେ ଅନେକ ତରୁଣ ଓ ଯୁବକ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୁଅନ୍ତେ । ଆପଣା ଘର ଲୋକର ଶକ୍ତି ଓ ପରାକ୍ରମକୁ ଆଖିର ରଖି ନିଜର ଅନ୍ତର୍ନିହିତ ଶକ୍ତିକୁ ଚିହ୍ନି ପାରନ୍ତେ । ଇଚ୍ଛା କଲେ ଚିତ୍ତରେ ସାହସ ବଢନ୍ତା ବଡ ବଡ଼ କାମ କରିବାକୁ ।

୧୯୭୪ ଶେଷ ଆଡକୁ ଦେଖିପାରିଲି ଆନ୍ଧ୍ରର ଶହୀଦ ଆଲୁରି ସୀତାରାମ ରାଜୁଙ୍କ ଜୀବନୀକୁ ନେଇ ଏକ ମୂଲ୍ୟବାନ ଚଳଚ୍ଚିତ୍ର । ପର ପ୍ରଦେଶରେ ତାର ଶହୀଦମାନଙ୍କୁ କେତେ ସମ୍ମାନ, ସେମାନଙ୍କର ଜୀବନୀ ପ୍ରଚାର ପାଇଁ କି ପ୍ରବଳ ଉଦ୍ୟମ ! ସେମାନଙ୍କ ତୁଳନାରେ ଲକ୍ଷ୍ମଣ ନାୟକଙ୍କ ବୀରତ୍ୱ, ଦେଶପ୍ରେମ ଓ ନେତୃତ୍ୱ ଆହୁରି ଆଶ୍ଚର୍ଯ୍ୟଜନକ ଓ ଶୃଙ୍ଖଳିକର । ଅହିଂସା ଆନ୍ଦୋଳନରେ ମାତି ନିଜ ପାଇଁ ତିଳାର୍ଦ୍ଧେ ଲୋଭ ନଥାଇ ପ୍ରାଣ ଦେବା ଓ ରାଜନୈତିକ ଚେତନା-ଶୂନ୍ୟ ସ୍ଥାନରେ ଦେଶପାଇଁ ନିର୍ଭୀକୁ ତ୍ୟେଇଁଲାଭଳି ଏକ ସଙ୍ଗଠନ ଗଢ଼ିବାରେ ତାଙ୍କର ପରି ବଳିଷ୍ଠ ବ୍ୟକ୍ତିତ୍ୱ ଭାରତବର୍ଷରେ କ୍ୱଚିତ୍‌ । ଲକ୍ଷ୍ମଣ ନାୟକଙ୍କ ଜୀବନର ସବୁଠାରୁ ଉଲ୍ଲେଖନୀୟ ଦିବସ, ୧୯୪୨ ଅଗଷ୍ଟ ୨୧ ତାରିଖରେ ମାତିଲି ଗୁଳିକାଣ୍ଡ ହିଁ ଏହାର ପ୍ରମାଣ । ସେ ଦିନ ପୋଲିସ୍‌ ଗୁଳିରେ, ତୁଣ୍ଡରେ ବନ୍ଦେ ମାତରମ୍‌ ସ୍ଲୋଗାନ୍‌ ଧରି ମଲେ ୪୦ ଜଣ କର୍ମୀ । ଆହତ ହେଲେ ଦୁଇ ଶହରୁ ଊର୍ଦ୍ଧ୍ୱ ବ୍ୟକ୍ତି । ଠିକ୍‌ ସେଇଦିନ ପାପଡାହାଣ୍ଡି ଗୁଳିକାଣ୍ଡରେ ମୃତ୍ୟୁବରଣ କଲେ ପ୍ରାୟ ୮୦ ଜଣ । ଦିନକରେ ୧୨୦ ଜଣ ଦେଶ ପାଇଁ ପ୍ରାଣବଳି ଦେଲେ । ଏମାନେ ସମସ୍ତେ ମଲେ ଅହିଂସା ଆନ୍ଦୋଳନ କରି । ଭାରତ ଇତିହାସରେ ଜାଲିଆନାୱାଲାବାଗ୍‌ ହତ୍ୟାକାଣ୍ଡ ଚଳକୁ ଏହା ଛଡ଼ା ଅନ୍ୟ ଉଦାହରଣ କାହିଁ ?

୧୯୭୫ ପ୍ରାରମ୍ଭରେ କେତେକ ଅନୁଷ୍ଠାନ ତରଫରୁ ଲକ୍ଷ୍ମଣ ନାୟକଙ୍କ ଜୀବନୀ ସଂକଳନ ଦିଗରେ କିଞ୍ଚିତ୍ ଉଦ୍ୟମ ଆରମ୍ଭ ହୋଇଥିଲା । ଯେଉଁମାନେ ଲକ୍ଷ୍ମଣଙ୍କ ସଂସ୍ପର୍ଶରେ ଆସିଛନ୍ତି ସେମାନଙ୍କୁ ଅନୁରୋଧ କରାଗଲା ଯେ ସେମାନେ ତାଙ୍କ ସମ୍ପର୍କରେ ଯାହା ଜାଣିଛନ୍ତି ଲେଖିକରି ପଠାନ୍ତୁ । କିନ୍ତୁ ସଂସାରର ଜଞ୍ଜାଳ ଭିତରେ କାହାର ବା ସମୟ ଅଛି ସମୟ ଖର୍ଚ୍ଚ କରି ଲେଖିବାକୁ । ତେଣୁ ଉଦ୍ୟମଟି ସଫଳ ହେଲା ନାହିଁ ।

ସଂକଳନ ଆଶା ମଉଳି ଯିବା ଉପରେ । ଏତିକିବେଳେ ମାଲକାନଗିରି ଏମ୍. ଏଲ୍. ଏ. ଶ୍ରୀ ଗଙ୍ଗାଧର ମାଡ଼ି କେତେକ ତଥ୍ୟ ଓ ରେକର୍ଡ-ପତ୍ର ଯୋଗାଡ଼ କରି ମୋତେ ବ୍ୟକ୍ତିଗତ ଭାବେ ଜୀବନୀଟିଏ ଲେଖିବାକୁ ଉତ୍ସାହ ଦେଲେ । ଜୀବନୀ ସଂକଳନ ପାଇଁ ରେକର୍ଡ଼ପତ୍ର ତ ଯଥେଷ୍ଟ ନୁହେଁ । ତେଣୁ ସେ ଓ ମୁଁ ୧୯୭୫ ମେ ମାସରେ ଜୟପୁର ଓ ଲକ୍ଷ୍ମଣ ନାୟକଙ୍କ ଜନ୍ମସ୍ଥଳୀ ତେନ୍ତୁଳିଗୁମ୍ମାକୁ ଗଲୁ । ତାଙ୍କର ପରିଚିତ ଅନେକ ଲୋକଙ୍କଠୁ ବ୍ୟକ୍ତିଗତ ଅଭିଜ୍ଞତାମାନ ଟିପି ଆଣିବାକୁ ପଡ଼ିଲା । ଲକ୍ଷ୍ମଣଙ୍କ ସ୍ତ୍ରୀ ଶ୍ରୀମତୀ ମଙ୍ଗୁଳି ନାୟକାଣୀ ଗତ ବର୍ଷ (୧୯୭୪ ସାଲରେ) ମରିଗଲେଣି । ତାଙ୍କର ପୁଅ ଶ୍ରୀ ରଘୁନାଥ ନାୟକଙ୍କ ସହିତ ଦେଖା ହେଲା । ତେନ୍ତୁଳିଗୁମ୍ମାର ଆଖପାଖ ଅନେକ ଗ୍ରାମକୁ ମଧ୍ୟ ଆମେ ଯାଇଥିଲୁ । ବଣ ଜଙ୍ଗଲ, ପାହାଡ଼ ପର୍ବତ ଭିତରେ ଅନେକ ବାଟ ଚାଲିବାକୁ ପଡ଼ିଲା । ଅଦ୍ୟାବଧି ତେନ୍ତୁଳିଗୁମ୍ମାଠୁ ସାଲିମି ଯାଏ ଉକ୍ତ ଅଞ୍ଚଳ ଦୁର୍ଗମ । ରାସ୍ତା ନାହିଁ ।

ମୋ ନିଜ ଘର କୋରାପୁଟର ଜୟପୁରରେ । ସୁତରାଂ କୋରାପୁଟର ଦୁର୍ଗମତା ଲୋକଙ୍କର ଦୁଃଖ ଦୁର୍ଦ୍ଦଶା ଇତ୍ୟାଦି ସହିତ ମୁଁ ପରିଚିତ । ଲକ୍ଷ୍ମଣ ନାୟକଙ୍କ ସମୟରେ ଲୋକଙ୍କର ସମସ୍ୟାବଳୀ ମୋର କଳ୍ପନାର ବହିର୍ଭୂତ ନୁହେଁ ।

ଲକ୍ଷ୍ମଣ ନାୟକଙ୍କ ସମବୟସ୍କମାନେ ବୁଢା ହୋଇଗଲେଣି । ବୟସ ୭୦ ରୁ ୮୦ ବର୍ଷ ଭିତରେ । ସେମାନଙ୍କ ସଂଖ୍ୟା ବି କମ୍ । ଅନେକେ

ସେଠାରେକ ଗ୍ଭଲିଗଲେଣି । କିନ୍ତୁ ଆଶ୍ଚର୍ଯ୍ୟର କଥା, ପ୍ରତ୍ୟେକ ଗ୍ରାମରେ ପିଲାଠୁ ବୁଢ଼ାଯାଏ ସମସ୍ତଙ୍କ ମନରେ ଲକ୍ଷ୍ମଣଙ୍କ ସ୍ମୃତି ସଦ୍ୟ । ବୋଧହୁଏ ତାଙ୍କର ଜୀବନ କାଳର ଗୌରବପୂର୍ଣ୍ଣ କାର୍ଯ୍ୟାବଳୀ ଏକ ଲୋକକଥା ପରି ପୁରୁଷ ପୁରୁଷ ଯାଏ ଗଡ଼ି ଗ୍ଭଲିବ । କେଉଁ ପାହାଡ଼, କେଉଁ ବଣ ଜଙ୍ଗଲରେ ଏବଂ ଗ୍ରାମର କେଉଁ ସ୍ଥାନଗୁଡ଼ିକରେ ସେ ସମୟ କାଟୁଥିଲେ ଏବଂ କିପରି କଟାଉଥିଲେ ତାର ବିବରଣୀ ସଂଗ୍ରହ କରି ସେଇ ସ୍ଥାନଗୁଡ଼ିକୁ ଯାଇଥିଲୁ । ତାଙ୍କ ରାଜନୈତିକ ଜୀବନର ଅନେକ କାର୍ଯ୍ୟାବଳୀ ସହିତ ସଂପୃକ୍ତ କେତେକ ଲୋକ ଜୟପୁରରେ ବର୍ତ୍ତମାନ ଅଛନ୍ତି ।

ଯେଉଁମାନେ ଯେଉଁ ତଥ୍ୟ ଯୋଗାଇଛନ୍ତି ବହିଟିରେ ସ୍ଥଳବିଶେଷରେ ସେଇମାନଙ୍କ ନାମ ଉଲ୍ଲେଖ କରାଯାଇଛି । ଉକ୍ତ ଘଟଣା ଓ ପରିବେଷ୍ଟନୀ ସେମାନଙ୍କ ବର୍ଣ୍ଣନାନୁଯାୟୀ ପ୍ରସ୍ତୁତ ହୋଇଛି । କେତେକ ଐତିହାସିକ ପୃଷ୍ଠଭୂମି ପାଇଁ ପୂର୍ବତନ ମନ୍ତ୍ରୀ ଶ୍ରୀରାଧାକୃଷ୍ଣ ବିଶ୍ୱାସରାୟଙ୍କ ଦ୍ୱାରା ଲିଖିତ ପୁସ୍ତିକା "କୋରାପୁଟ ଜିଲ୍ଲା କଂଗ୍ରେସ ନୂଆ ପ୍ରଦେଶର ପରିକଳ୍ପନା"ର ସାହାଯ୍ୟ ନିଆଯାଇଛି । ଏ ସମସ୍ତଙ୍କୁ ମୋର ବିନମ୍ର କୃତଜ୍ଞତା ଜଣାଉଛି ।

ବହିଟି ଲେଖିଲାବେଳେ ଓଡ଼ିଶାର ସୁନାମଧନ୍ୟ ଲେଖକ, ଜ୍ଞାନପୀଠ ପୁରସ୍କାର ବିଜେତା ଶ୍ରୀ ଗୋପୀନାଥ ମହାନ୍ତି ଅନେକ ସାହାଯ୍ୟ କରିଛନ୍ତି । ଜୀବନୀ ଲେଖିବାର କେତେକ ସାରଗର୍ଭକ ତତ୍ତ୍ୱ ଓ ଭାଷା ପ୍ରୟୋଗ ଉପରେ ସେ ଦିଗ୍‌ଦର୍ଶନ ଦେଇଛନ୍ତି । ମୁଁ ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ପାଣ୍ଡୁଲିପି ପ୍ରସ୍ତୁତି କାଳରେ ଏବଂ ବହିଟିକୁ ପ୍ରକାଶ କରିବା ପାଇଁ ଓଡ଼ିଶାର ଅନେକ ଆଦିବାସୀ ଏମ୍. ଏଲ୍. ଏ. ମୋତେ ବହୁ ଉତ୍ସାହ ପ୍ରଦାନ କରିଛନ୍ତି । ସେମାନେ ଧନ୍ୟବାଦାର୍ହ ।

ଦାଶରଥି ନନ୍ଦ

# ଏକ

୧୯୪୩ ସନ ମାର୍ଚ୍ଚ ମାସ ୨୯ ତାରିଖ । ଭୋର ପାଞ୍ଚଟା । ଆକାଶରେ ସିନ୍ଦୂର ଫାଟିଛି । ବ୍ରହ୍ମପୁର ଜେଲରେ ଫାଶୀଖୁଣ୍ଟରୁ ଝୁଲି ହେଲେ ଲକ୍ଷ୍ମଣ ନାୟକ । ଭାରତର ସ୍ୱାଧୀନତାର ଇତିହାସ ଗଢ଼ିବାକୁ ଠିଆ ହେଲା ଆଉର ଗୋଟିଏ ଖମ୍ବ । ସେ ଶହୀଦ ହେଲେ, ଅମର ହେଲେ ।

ପୂର୍ବ ରାତିରେ ସେ କହିଥିଲେ—"ସ୍ୱରାଜ୍ୟ ଆସିବ ମୁଁ ଜାଣେ । ମୋପରି କେତେ ଲୋକ ମୋ ଆଖି ଆଗରେ ମରିଛନ୍ତି । କେତେ ଲୋକ ଫାଶୀ ପାଇଛନ୍ତି । ମୋର ମୃତ୍ୟୁ ପାଇଁ ଚିନ୍ତା ନାହିଁ । ଦୁଃଖ ଏତିକି ପାଇଁ ଯେ, ସ୍ୱରାଜ୍ୟ ଆସିବ ମୁଁ ଦେଖିପାରିବି ନାହିଁ ।"

ଫାଶୀଖୁଣ୍ଟ ଆଡ଼କୁ ଯାଉ ଯାଉ ପୋଲିସ ଆଗରେ ସେ ତାଙ୍କର ଶେଷ ଉକ୍ତି କହିଥିଲେ, "ଯେବେ ଆକାଶରେ ସୂର୍ଯ୍ୟ ଅଛି, ଚନ୍ଦ୍ର ଅଛି, ଦେଖିବ ରହିଥା ସ୍ୱରାଜ୍ୟ ନିଶ୍ଚୟ ଆସିବ । ଏ କଥା ମିଛିବାର ନୁହେଁ ।"

ସେ ଗଲେ । ତାଙ୍କର ପ୍ରିୟତମ ନେତା ଚିରକାଳ ପାଇଁ ଚାଲିଗଲେ ବୋଲି ଖାଲି ଯେ ତାଙ୍କର ଗାଁ ତେନ୍ତୁଲିଗୁମ୍ମା, ତାଙ୍କ ତାଲୁକା ମାଲକାନଗିରିର ଲୋକେ କାନ୍ଦିଲେ, ଗଛପତ୍ର ବି ବାହୁନିଲେ ସେତିକି ନୁହେଁ, ସେ ଶୋକୋଚ୍ଛ୍ୱାସ ଲାଗି ରହିଲା କୋରାପୁଟ ଜିଲ୍ଲାଯାକ ଓ କୋରାପୁଟକୁ ଟପି ସମଗ୍ର ଓଡ଼ିଶାଯାକ । ଯେଉଁ ଇଂରେଜ ସରକାର ତାଙ୍କୁ ମାଥିଲି ଥାନା ଆକ୍ରମଣ କାଣ୍ଡ ନାମରେ ଅପରାଧୀ କରି ଫାଶୀ ଦିଆଇଥିଲେ, ୧୯୪୭ ଅଗଷ୍ଟ ପନ୍ଦରରେ ସେ ବି ଭାରତ ହାତକୁ ତାର ସ୍ୱାଧୀନତା ଟେକି ଦେଇ ଏ ମାଟିରୁ ବିଦାୟ ନେଇଗଲେ ।

କିନ୍ତୁ ରହିଗଲା ଲକ୍ଷ୍ମଣ ନାୟକଙ୍କର ସ୍ମୃତି ଅଳିଭା ଅକ୍ଷରରେ ଭାରତର ସ୍ୱାଧୀନତା ଇତିହାସରେ କାଳକାଳକୁ । ସେ ରହିଲେ ନାହିଁ ଶୁଣିବାକୁ ତାଙ୍କ ପାଇଁ ଦେଶବାସୀଙ୍କ ଶୋକୋଚ୍ଛ୍ୱାସ, ସ୍ୱରାଜ ଆଗମନର ବିଜୟୋଲ୍ଲାସ, ତାଙ୍କ ସ୍ମୃତି ପ୍ରତି ଚିରକାଳ ସମ୍ମାନ ଓ ଶ୍ରଦ୍ଧାଞ୍ଜଳି, ତାଙ୍କର ନାନା ଗୁଣ ଓ ଅପୂର୍ବ ତ୍ୟାଗର ଯୁଗେ ଯୁଗେ ପ୍ରଶଂସା ।

ଆଜି ଲକ୍ଷ୍ମଣ ନାୟକ କହିଲେ ବୁଝାଏ ଖାଲି ଜଣେ ଲେଙ୍ଗୁଟିମରା ଭୂମିଆଁ ଜାତିର ଆଦିବାସୀ ନୁହଁ; ଜନତା ପ୍ରତି ଅତ୍ୟାଚାରର ବଳିଷ୍ଠ ନିର୍ଭୀକ ପ୍ରତିରୋଧର ପ୍ରତୀକ; ସତ୍ୟ ପାଇଁ, ନ୍ୟାୟ ପାଇଁ, ଦେଶର ସ୍ୱାଧୀନତା ପାଇଁ ଜଣେ ନିଷ୍ଠାପର ସଂଗ୍ରାମୀ ଏବଂ ଆପଣାର ବିଶ୍ୱାସ ଲାଗି ଅପଣାକୁ ବଳି ପକାଇଥିବା ଜଣେ ଅଦ୍ଭୁତ ଜୀବନଦାନୀ ।

ଆଦିମ ବନ୍ୟ ଯୁଗର ଅଶିକ୍ଷିତ, ଅନ୍ଧାର, ପ୍ରତିରୋଧ, ଚେତନାଶୂନ୍ୟ, ଅନାମଧେୟ, ବନ ପର୍ବତର ପରିବେଶ ଭିତରୁ କପରି ତାଙ୍କଭଳି ଏଡ଼େ ବଡ଼ ରାଜନୈତିକ କର୍ମୀ, ସଂଗଠକ, ନେତା ଓ ମହାପ୍ରାଣ ବ୍ୟକ୍ତିଙ୍କ ଉଦ୍ଭବ ସମ୍ଭବ ହେଲା । ତାଙ୍କ ଅଞ୍ଚଳ ଓଡ଼ିଶାର ନକ୍ସାରେ ପାଇବା କଷ୍ଟ । ସମୁଦ୍ର ଉପକୂଳ ଜିଲ୍ଲା ନୁହେଁ, ଶିଳ୍ପ, ବାଣିଜ୍ୟ, କାରିଗରୀ ପାଇଁ ପ୍ରସିଦ୍ଧ କୌଣସି ଜିଲ୍ଲା ନୁହେଁ, ଓଡ଼ିଶାର ଦକ୍ଷିଣତମ ଜିଲ୍ଲା ପାର୍ବତ୍ୟ କୋରାପୁଟ । ତାର ପୁଣି ପଶ୍ଚିମତମ ପ୍ରାନ୍ତ । ସେତେବେଳର ମାଲକାନଗିରି ତାଲୁକା ଆଜିକାଲିକାର ସବ୍‌ଡିଭିଜନ । ତାର ଭିତରେ, ପ୍ରକାଣ୍ଡ ପ୍ରକାଣ୍ଡ ପାହାଡ଼ ମାଳ, ଘଞ୍ଚ ଅରଣ୍ୟ ସଙ୍କଟରେ, କୋରାପୁଟରୁ ନାନା ପର୍ବତ ଉପତ୍ୟକା, ନଦୀ ଓ ଅରଣ୍ୟ ପାରି ହୋଇ ଆଦିମ ପରିବେଶ ମାଇଲଗଲେ ତେନ୍ତୁଳି ଗୁମ୍ଫା । ତା ପାଖରେ ବିଖ୍ୟାତ ଗୁପ୍ତେଶ୍ୱର ମହାଦେବ, କୋଲାବ ନଦୀ କୂଳରେ ପର୍ବତ ଗୁମ୍ଫାରେ ବିରାଟ ସ୍ୱୟମ୍ଭୂ ଶିବଲିଙ୍ଗ । ଏବେ ମଧ୍ୟ ସେଇ ଉପକୂଳର ଶାଳ ବଣ ଓ ବାଉଁଶ ବଣରେ ମହାବଳ ବାଘର ଉପଦ୍ରବ । ଲୋକେ ସେଠି ଅଧିକାଂଶହିଁ ଆଦିବାସୀ । ଜାତିରେ ଢୋମ୍ବ, ଗଦବା, ବଣ୍ଡା, ପାରେଙ୍ଗା, ଭୂମିଆଁ, ଭତଡ଼ା, ପରଜା ଓ ଅନ୍ୟାନ୍ୟମାନେ । ଅଧିକାଂଶ

ନରଖର, ଅଧିକାଂଶ ସ୍ତ୍ରୀ କୌପୁନୀ ପିନ୍ଧନ୍ତି । ପିଲାମାନେ ଛୁଆଣି କୁଡ଼ିଆ ଘରେ ରହନ୍ତି । ଖାଦ୍ୟ ନ ମିଳିଲେ ଟାକୁଆ, ଚେନ୍ଦୁଳମଞ୍ଜି, ଶଳପ କାଠର ଧୂଳି, ଶାଗ, ଡାଳ, କନ୍ଦା ଖାଆନ୍ତି । ବୃତ୍ତି ଚାଷ । ପର୍ବତରେ ପୋଡ଼ୁ ଚାଷ, ଧନୁଶରରେ ଶିକାର ।

ଏଇ ବଣୁଆ, ନଗ୍ନପ୍ରାୟ ମଣିଷମାନଙ୍କ ମନରୁ ଭୟ ଛଡ଼ାଇଲେ ଲକ୍ଷ୍ମଣ ନାୟକ । ଯେଉଁଠି ଚିରକାଳରୁ ଚଳି ଆସୁଥିଲା ସବୁ ପ୍ରକାର ଜୁଲୁମ, ସବୁପ୍ରକାର ଅନ୍ୟାୟ, ଶୋଷଣ ଆଗରେ "ଚିତମ୍ ମହାପ୍ରଭୁ" 'ଯେ ଆଜ୍ଞା ମହାପ୍ରଭୁ' 'ତୋର ଇଷ୍ଟ (ଇଚ୍ଛା) ମହାପ୍ରୁ' ଯା ଖୁସି ତା କର, ଯେତେ ଇଚ୍ଛା ବାଧା ଗୋଇଠା ମାର, ଯା' ମାଗୁଛୁ ତା' ନେ, ସେଇଠି ସେ ଅନ୍ୟାୟ, ଶୋଷଣ, ଅତ୍ୟାଚାର ବିରୁଦ୍ଧରେ ଗ୍ରାମେ ଗ୍ରାମେ ଲୋକଙ୍କୁ ସଙ୍ଗଠିତ କରିଥିଲେ । ତାଙ୍କ ଭୂଣ୍ଡରୁ ବାହାର କରାଇଥିଲେ ସମବେତ ସ୍ୱରରେ ସେଇ ପଦେ କଥା, ଯେ ଯୁଗ ଓଲଟାଏ—

—ଆମି ନଚ୍ ବେ । ଆମି ନଚ୍ ବେ ।' (ମୁଁ ମନା କରୁଛି । ମୋର ରାଜ ନାହିଁ । )

—"ମାମ୍ କ୍ ନାବୁ ।" (ଆମେ ରାଜ ନୋହୁ)

—"ଆମେ ନାଇ ଦବୁ ।"

ଯେଉଁ କନ୍ଧପଯ୍ଯ ଲୋକ ମହାତ୍ମା ଗାନ୍ଧୀଙ୍କ ଉପଦେଶକୁ ଅକ୍ଷରେ ଅକ୍ଷରେ ପାଳୁଥିଲେ, ବିନା ଦ୍ୱିଧାରେ, ବିନା ସନ୍ଦେହରେ ତାଙ୍କ କଥାରେ ବିଶ୍ୱାସ କରିଥିଲେ, ତାଙ୍କ ଆଦେଶରେ ନିଆଁକୁ ଡେଇଁବାକୁ ବାହାରି ପଡ଼ିଥିଲେ ତାଙ୍କର ଭିତରୁ ଲକ୍ଷ୍ମଣ ନାୟକ ଥିଲେ ଅନ୍ୟତମ । ଗାନ୍ଧି ମହାତ୍ମା କହିଛନ୍ତି, "ଆମେ ଅନ୍ୟାୟକୁ ସହିବୁ ନାହିଁ । ଅନ୍ୟାୟ ମାଗଣ ଦେବୁ ନାହିଁ । ଅନ୍ୟାୟ ଟିକସ ଦେବୁ ନାହିଁ । ଯେ ଯେତେ ବଡ଼ 'ଅଧିକାରୀ' ହେଉ । "ଆମେ ଅସହଯୋଗ କରିବୁ । ଖଜଣା ଦେବୁ ନାହିଁ । ହାଟ ପାଲୁ ଦେବୁ ନାହିଁ । ବୋଝ ବୋହିବାକୁ ବେଠି ଦେବୁ ନାହିଁ । ସରକାରୀ ବଙ୍ଗଳା ଛୁଆଣି କରିବାକୁ ମାଗଣାରେ ପିଲାମାନେ ଦେବୁ ନାହିଁ । ଆମେ ସଭା କରିବୁ । ଆମ ମନ ଦୁଃଖ ବଡ଼ ପାଟିରେ କହିବୁ ।

ତୁମ ବିରୁଦ୍ଧରେ ଆମ ଅଭିଯୋଗ ହଜାର ସ୍ୱରରେ ପାଟି କରିବୁ । ତୁମେ ଶୁଣ ଅବା ନ ଶୁଣ । ତୁମେ ଆମକୁ ଧର, ମାର, ଜେଲ୍ ଦିଅ, ହାଣ, କାଟ, ଆମେ ଆପତ୍ତି କରିବୁ ନାହିଁ । ଆମେ ତୁମ ଉପରକୁ ହାତ ଟେକିବୁ ନାହିଁ । ଗାନ୍ଧି ମହାତ୍ମା ମନା କରିଛନ୍ତି । ଆମେ ମାଡ଼ ଖାଇବୁ, ମାଡ଼ ଦେବୁ ନାହିଁ । କିନ୍ତୁ ତୁମ କଥା ମାନିବୁ ନାହିଁ ।" ଏ ମନ୍ତ୍ରରେ ସେ ବଣ ପାହାଡ଼ର ଲୋକଙ୍କୁ ମତାଇ ପାରିଥିଲେ, ଚତାଇ ପାରିଥିଲେ !

କୌଣସି ପ୍ରଲୋଭନ, କୌଣସି ପ୍ରକାର ଭୟ ସେମାନଙ୍କୁ ଫଟାଇ ପାରିବ ନାହିଁ । ଅଥଚ ଲକ୍ଷ୍ମଣ ଡାକଟାଏ ମାରିଦେଲେ ମାଲକାନଗିରି ତାଲୁକା ଯାକର ଲୋକ ଉଠି ଠିଆ ହେବେ । ସେ କହିଦେବା ମାତ୍ରେ ପାଲୁ ବନ୍ଦ, ଖଜଣା ବନ୍ଦ, ସବୁ ବନ୍ଦ । ତାର ପରିଣତି ଯାହା ହେଉ, ଟେଣିକି ଖାତିର ନାହିଁ । ଏପରିକି ତାଙ୍କ ଆଦେଶରେ ବନ୍ଧୁକ ଆଡ଼କୁ ମଧ୍ୟ ଲୋକେ ଛାତି ଟେକାଇ ଦେବେ ।

ଲକ୍ଷ୍ମଣଙ୍କ ଅହିଂସା ବିପ୍ଳବ ଏବଂ ସାଂଗଠନିକ ଉତ୍କର୍ଷତା ଯୋଗୁଁ ତାଙ୍କ ଅଞ୍ଚଳରେ ଚାଲିଥିବା ଅନେକ ଅତ୍ୟାଚାରର ଅବସାନ ଘଟିଥିଲା । ଜୟପୁର ରାଜାଙ୍କର କର୍ମଚାରୀ, ଇଂରେଜ ସରକାରଙ୍କ କର୍ମଚାରୀ ବ୍ୟତିବ୍ୟସ୍ତ ହୋଇଥିଲେ । ସରକାର ଥରହର ହୋଇଥିଲେ । ଖାଲି ଅପେକ୍ଷା ଥିଲା କେତେବେଳେ ସୁଯୋଗ ଆସିବ, କଣ୍ଟକ ନିର୍ମୂଳ ହେବ ।

ଆସିଲା ୧୯୪୨ । ଲକ୍ଷ୍ମଣ ନାୟକଙ୍କ କାନରେ ସମ୍ବାଦ ପହଞ୍ଚିଲା ମହାତ୍ମାଜୀ ବନ୍ଦୀ, ନେତାମାନେ ବନ୍ଦୀ । କିନ୍ତୁ ତା ପୂର୍ବରୁ ସେ କହି ଯାଇଛନ୍ତି ଏଥରକ ଅହିଂସା ବିପ୍ଳବ ତୀବ୍ରତର କରିବାକୁ ହେବ । ଏଇଥର 'କର ବା ମର' । ଆସିଲା ନିର୍ଦ୍ଦେଶ ବିକ୍ଷୋଭ କର । ଇଂରେଜ ସରକାର ଆହୁରି ଦମନଲୀଳା ଚଳାଇଲେ ।

ଅଗଷ୍ଟ ୧୯୪୨ ଡାକ ଦେଲା । ଅଗଷ୍ଟ ୨୧ ତାରିଖରେ ଜନତା ଚାଲିଲେ ମାଥିଲି ଥାନା ଆଗରେ ବିକ୍ଷୋଭ କରିବାକୁ ନେତୃତ୍ୱ

ନେଲେ ଲକ୍ଷ୍ମଣ ନାୟକ । ପୁଲିସ ଗୁଳି ଚଳାଇଲେ, ଲୋକ ମଲେ । ଜଣେ ଫରେଷ୍ଟ ଗାର୍ଡ଼ ସେଇ ସ୍ଥଳରେ ଟଳି ପଡ଼ିଲେ । ମାଟିଲିର ସରକାରୀ ଡାକ୍ତର ରିପୋର୍ଟ ଦେଲେ ସେ ଠେଙ୍ଗା ମାଡ଼ରେ ମରିଥିବ । ପୁଲିସ୍ ପକ୍ଷରୁ ସାକ୍ଷ୍ୟ ଦିଆଗଲା ସେ ଠେଙ୍ଗା ମାଡରେ ମରିଛି । ମୁଣ୍ଡ ଉପରେ ପ୍ରଥମ ଘାଡ ଓ ମରଣ ଘାତର କୁଆଡ଼େ ଲକ୍ଷ୍ମଣ ନାୟକ ଦେଲେ । ଲକ୍ଷ୍ମଣ ନାୟକ ମନା କଲେ । ଆସାମୀମାନଙ୍କ ତରଫରୁ କୁହାଗଲା ଫରେଷ୍ଟ ଗାର୍ଡ ହୁଏତ ପୁଲିସ୍ ଗୁଳିରେ ମରିଥିବ, ସେମାନେ ଜାଣି ନାହାନ୍ତି । ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ୍ ପୋଲିସ୍ ଚାର୍ଜସିଟ୍ ଉପରେ ୫୪ ଜଣ ଆସାମୀଙ୍କୁ ସେସେନସ କୋର୍ଟକୁ 'କମିଟ୍' କଲେ । ସ୍ପେଷାଲ ସେସେନସ୍ ଜଜ ଲକ୍ଷ୍ମଣ ନାୟକଙ୍କୁ ଫାଶୀ ହୁକୁମ ଦେଲେ ଏବଂ ୪୯ ଜଣଙ୍କୁ ଆଜୀବନ କାରାବାସ ଓ ଆଦେଶ ଦେଲେ ଯେ ସେଥିରୁ ପ୍ରଥମ ୯ ବର୍ଷ ସଶ୍ରମ କାରାଦଣ୍ଡ ଭୋଗିବେ । ମାନ୍ୟବର ପାଟଣା ହାଇକୋର୍ଟ ଅପିଲ୍‌ରେ ମଧ୍ୟ ଲକ୍ଷ୍ମଣ ନାୟକଙ୍କ ପ୍ରାଣଦଣ୍ଡକୁ କାଏମ୍ ରଖିଲେ । ତାଙ୍କୁ ଫାଶୀ ହେଲା ।

ଲକ୍ଷ୍ମଣ ନାୟକଙ୍କପରି ତ୍ୟାଗୀ ବୀରଙ୍କ ସ୍ମୃତି ସବୁଦିନେ ଓଡ଼ିଶାବାସୀଙ୍କ ହୃଦୟରେ ବିରାଜିଥିବ । ସେଇ ସ୍ମୃତି ମାଲକାନଗିରିର ଅରଣ୍ୟବାସୀଙ୍କ ଭିତରେ ଆଜି ମଧ୍ୟ ଆହୁରି ଜୀବନ୍ତ ଓ ମର୍ମସ୍ପର୍ଶୀ ହୋଇ ରହିଛି । ବାପଠୁ ପୁଅ ଶୁଣିଛି, ପୁଅଠୁ ଶୁଣିଛି ବୁଢ଼ାର ନାତି । ସେମାନେ ଅନୁଭବ କରନ୍ତି ଯେ ସତେ ଯେମିତି ଲକ୍ଷ୍ମଣ ସେମାନଙ୍କ ଭିତରେ ପୂର୍ବପରି ସେମିତି ବଞ୍ଚି ରହିଛନ୍ତି । ଦୁଃଖ ଦୁର୍ଦ୍ଦଶାରେ ଛାତିରେ ଦମ୍ଭ ଦେଉଛନ୍ତି । ସତେ ଯେମିତି କାଲିପରି ଏଇ ପିଣ୍ଡାରେ ସେ ବସିଥିଲେ, ଆଜି ସକାଳେ ଏଇ ରାସ୍ତା ଦେଇ ସେ ଚାଲିଗଲେ ।



# ଦୁଇ

ଓଡ଼ିଶାର ମାନଚିତ୍ରରେ ଦକ୍ଷିଣତମ ଅଂଶ ଯେଉଁ ବିନ୍ଦୁରେ ମିଳିତ ହେଉଛି ତାହା ଶବରୀ ଓ ସିଲେରୁ ନଦୀର ସଂଗମ ସ୍ଥଳ । ଗ୍ରାମଟିର ନାମ ମୋଟୁ । ଉତ୍ତରରୁ ବଙ୍କେଇ ଟଙ୍କେଇ ବହି ଆସୁଛି ଶବରୀ ବା କୋଲାବ ନଦୀ ଏବଂ ପୂର୍ବରୁ ପାହାଡ଼ ପର୍ବତ ଡେଇଁ ଗଡ଼ି ଆସୁଛି ସିଲେରୁ ବା ମାଛକୁଣ୍ଡ ନଦୀ । ଏହି ସଂଗମସ୍ଥଳରୁ ଓଡ଼ିଶା ଭିତରକୁ ବୈପାରିଗୁଡା ପର୍ଯ୍ୟନ୍ତ ପ୍ରାୟ ଦୁଇ ହଜାର ବର୍ଗମାଇଲ ବ୍ୟାପୀ ବିଶାଳ ତ୍ରିକୋଣାକାର ଅଞ୍ଚଳଟି ହେଉଛି କୋରାପୁଟର ମାଲକାନଗିରି ସବ୍‌ଡିଭିଜନ୍ ।

ସିଲେରୁ ନଦୀର ଦକ୍ଷିଣରେ ଆନ୍ଧ୍ରରେ ମଡ଼୍‌ଗୁଲ ପର୍ବତ ବିଛେଇ ହୋଇପଡ଼ିଛି ହଜାର ହଜାର ବର୍ଗମାଇଲ ବ୍ୟାପୀ ଏବଂ ଉତ୍ତରରେ ଓଡ଼ିଶାର ବିଖ୍ୟାତ ଦଣ୍ଡାଘାଟ ପର୍ବତମାଳା ନଈ କଡ଼େ କଡ଼େ କାନ୍ଥପରି ଠିଆ ହୋଇଛି । ଏଣେ ମଧ୍ୟପ୍ରଦେଶ ଓ ଓଡ଼ିଶାର ସୀମାରୂପେ ଚିହ୍ନିତ କୋଲାବ ନଦୀର ଉଭୟ ପାର୍ଶ୍ୱରେ ମଧ୍ୟ ବିଶାଳ ବିଶାଳ ପର୍ବତ । ଏ ଦୁଇଟି ନଦୀ ଚାଳିଶ ମାଇଲ ଭିତରେ ପ୍ରାୟ ଦୁଇ ହଜାର ଫୁଟ ତଳକୁ ଖସି ଆସିଛନ୍ତି ଅନେକ ସୁନ୍ଦର ଓ ଭୟଙ୍କର ଜଳପ୍ରପାତ ସୃଷ୍ଟି କରି । ମାଛକୁଣ୍ଡ ନଦୀର ଡୁଡୁମା ଜଳପ୍ରପାତ ଓ କୋଲାବର ବାଗ୍ରା ଜଳପ୍ରପାତ ଓଡ଼ିଶାରେ ସବୁଠାରୁ ବଡ଼ । ଉଭୟ ନଦୀ ବିଦ୍ୟୁତ୍ ଶକ୍ତିର ଗନ୍ତାଘର । ଏବେ ତ ସିଲେରୁ ନଦୀର ମାଛକୁଣ୍ଡ ଓ ବାଲିମେଳା ବିଦ୍ୟୁତ୍ ଯୋଜନା ଶେଷ ହୋଇଛି । ଉପର ଓ ତଳ କୋଲାବ ଯୋଜନା କାର୍ଯ୍ୟକାରୀ ହେଉଛି ।

ସୁତରାଂ ଶେଷମୁଣ୍ଡ ମୋଟୁଠାରୁ ସତେ ଯେପରି ଦୁଇଟି ନଦୀ ଓ ଦୁଇଧାର ପର୍ବତମାଳା ମାଲକାନଗିରି ସବଡିଭିଜନକୁ କୁଣ୍ଢେଇ ଧରିଛନ୍ତି । ତା ମଝିରେ ମୋଟୁଠାରୁ କୋରାପୁଟ ପ୍ରଧାନ ସହର ଜୟପୁର ଯାଏ ଏକ ଶହ ମାଇଲ ବ୍ୟାପୀ ପ୍ରାୟ ବାର ମାଇଲ ଓସାରର ଏକ ସରୁଆ ସମତଳ ଭୂମି । ଏଥିରେ ମଧ୍ୟ ସ୍ଥାନେ ସ୍ଥାନେ ସାନ ବଡ଼ ଅନେକ ପର୍ବତ, ଅନେକ ଛୋଟ ନଦୀ । ଉପତ୍ୟକାଟିକୁ ମଝିରୁ ଦୁଇ ଭାଗ କରି ଜୟପୁରରୁ ମୋଟୁଯାଏ ଏକ ରାସ୍ତା । ଏହି ରାସ୍ତାରେ ଜୟପୁରରୁ ୨୨ କିଲୋମିଟର ଦୂରରେ ବୋଇପାରିଗୁଡ଼ା, ୫୦ କି ମି: ରେ ଗୋବିନ୍ଦପାଲି, ୭୫ କି ମି: ରେ ଦୂରରେ ମାଥିଲି ଏବଂ ୧୦୦ କି: ମି: ରେ ପଡ଼ିବ ମାଲକାନଗିରି । ଗୋବିନ୍ଦପାଲିରୁ ବାଁ କଡ଼ରେ ଗୋଟିଏ ରାସ୍ତା ବାଲିମେଳା ଯାଏ ଏବେ ନିର୍ମିତ ହୋଇଛି । ୬ ହଜାର ବର୍ଗ କିଲୋମିଟର ବ୍ୟାପୀ ଏହି ବିଶାଳ ଭୂଖଣ୍ଡରେ ଏତିକି ମାତ୍ର ଗମନାଗମନର ସୁବିଧା । ତେଣୁ ୫୦/୬୦ଟି ଗ୍ରାମକୁ ଛାଡ଼ି ଦେଲେ ସବଡିଭିଜନର ପ୍ରାୟ ୨୦୦୦ ଗ୍ରାମ ଦୁର୍ଗମ ।

ବୋଇପାରିଗୁଡ଼ାରୁ ମାଲକାନଗିରି ଯାଏ ଭୟଙ୍କର ଜଙ୍ଗଲ । ସବୁଜ ଜଙ୍ଗଲର ଡେଉଡେଉକା ମହାସମୁଦ୍ର । ବିରାଟ ବିରାଟ ଦ୍ରୁମ ଆକାଶକୁ ମୁଣ୍ଡ ଟେକିଛି । ଏତେ ବାଉଁଶ ଗଛ ଯେ, ଅନାୟାସରେ ଦୁଇଟି ବଡ଼ କାଗଜ କଳ ସ୍ଥାପନ କରାଯାଇପାରେ । ଜଙ୍ଗଲ ଭିତରେ ଭୟଙ୍କର ଗର୍ଜନ କରି ଛୁଟି ଚାଲିଛି ନଈ ନାଳ ଭୀଷଣ ବେଗରେ ।

ମାଲକାନଗିରି ଅଞ୍ଚଳର ବନ୍ଧୁର ଉପତ୍ୟକା, ଭୟାବହ ଅରଣ୍ୟ ଓ ପର୍ବତ ପୁରାଣ ପ୍ରସିଦ୍ଧ । ଏହା ହେଉଛି ରାମାୟଣରେ ବର୍ଣ୍ଣିତ ଦଣ୍ଡକ ରାଜାଙ୍କ ରାଜଧାନୀ ସୁବିଖ୍ୟାତ ଦଣ୍ଡକାରଣ୍ୟ, ଯେଉଁଠି ପ୍ରଭୁ ଶ୍ରୀ ରାମଚନ୍ଦ୍ର ବନବାସ କରିଥିଲେ । ପାଞ୍ଚ ହଜାର ବର୍ଷରେ ସେଇ ମାଲ୍ୟବନ୍ତଗିରି ଅପଭ୍ରଂଶ ହୋଇ ଏବେ ବୋଲାଉଛି ମାଲକାନଗିରି । ମୈଥିଳୀ ହୋଇଛି ମାଥିଲି । ଶିଳାଦ୍ରି ପାଲଟିଛି ସିଲେରୁରେ । ରାମାୟଣର ସେଇ ରାମଗିରି, ସୀତାଙ୍କ ସ୍ନାନ ପୀଠ ତମସା ନଦୀ ଏବେ ବି ସେଠାରେ ଅଛି । ଏବେ ମଧ୍ୟ ସେଇ ଘଞ୍ଚି ଧଡ଼କା ଜଙ୍ଗଲରେ ବୁଲିଲେ ରାମାୟଣ ଯୁଗକୁ ଫେରିଗଲା ପରି ମନେ ହୁଏ ।

ମାଲକାନଗିରିଠାରୁ ମୋଟୁ ପର୍ଯ୍ୟନ୍ତ କେବଳ ଘଞ୍ଚ ଅରଣ୍ୟ ନାହିଁ । ଏଠାର ଭୂମି ପଥର ମୁରମରେ ଭର୍ତ୍ତି । ଉପରେ ଗୃଖଣ୍ଡେ କହଳର ମାଟି । ଏ ଅଞ୍ଚଳଟି ଘାସରେ ମୂର୍ଣ୍ଣ । ଠାଏ ଠାଏ ବୁଦୁ ବୁଦୁକଆ ଜଙ୍ଗଲ ।

ଏହି ବିଶାଳ ଭୂଖଣ୍ଡର ପାହାଡ ଶିଖରରେ, ପାଦଦେଶରେ, ବଣ ମଝିରେ, ନଦୀ ତଟରେ ଓ ଉପତ୍ୟକା ଭିତରେ ପନ୍ଦର କୋଡ଼ିଏ କଲୋ-ମିଟର ଅନ୍ତରରେ ଛୋଟ ଛୋଟ ଗାଁଟିମାନ ବିଛୁରି ହୋଇପଡ଼ିଛି । ଗାଁ ଗାଁକୁ ଗମନାଗମନରେ ସୁବିଧା ନାହିଁ । ଚାଲି ଚାଲି ଯିବାକୁ ହିଁ ହୁଏ । ନଦୀପର୍ବତ ଡେଇଁ । ଦଣ୍ଡକାରଣ୍ୟ ଯୋଜନାର ଶରଣାର୍ଥୀ କଲୋନୀଗୁଡ଼ିକୁ ମିଶାଇ ସମଗ୍ର ଗ୍ରାମ ସଂଖ୍ୟା ପ୍ରାୟ ଦୁଇ ହଜାର ଓ ଲୋକସଂଖ୍ୟା ଦୁଇ ଲକ୍ଷ । ଅର୍ଥାତ୍ ଏବେ ପ୍ରତି ବର୍ଗ କଲୋମିଟରରେ ବାସ କରନ୍ତି ମାତ୍ର ଦଶ ଜଣ ।

ଅଧିବାସୀମାନେ ମୁଖ୍ୟତଃ ଆଦିବାସୀ । ମୋଟୁଠାରୁ ମାଲକାନଗିରି ଯାଏ କୋୟାମାନଙ୍କ ରାଜ୍ୟ । ସିଲେରୁ ନଦୀତଟ ବିସ୍ତୀର୍ଣ୍ଣ ପାହାଡ଼ମାନଙ୍କରେ ରହନ୍ତି ବଣ୍ଡାମାନେ, ଅଦ୍ୟାବଧି ଅର୍ଦ୍ଧ ଉଲଗ୍ନ । ମାଲକାନଗିରି ବୈପାରିଗୁଡ଼ା ଅଞ୍ଚଳରେ ନାନା ଜାତିର ଆଦିବାସୀ ଦେଖାଯାନ୍ତି । ସେମାନେ ହେଲେ ଭୂମିଆଁ, ଗଦବା, କୋୟା, ପରଜା ଇତ୍ୟାଦି ।

ପୂର୍ବୋକ୍ତ ଅଞ୍ଚଳରେ କୋଲାବ ନଦୀତଟରେ ଏକ ଛୋଟ ଗ୍ରାମ— ନାମ ତେନ୍ତୁଳିଗୁମା । ମାତିଲିର ଉତ୍ତରକୁ ୧୩ କି. ମି. ଦୂରରେ କୋଲାବ ନଦୀ ପାର ହୋଇ ବାଘ, ଉଦୟଗିରି, ସାନଗୁମ୍ମା ଆଦି ଡେଇଁ ବାର ମାଇଲ ଗ୍ଲଲେ ପଡ଼ିବ ତେନ୍ତୁଳିଗୁମ୍ମା । ଜୟପୁରଠାରୁ ତେନ୍ତୁଳିଗୁମ୍ମା ଯିବା ପାଇଁ ଆଉରି ଏକ ରାସ୍ତା ବି ଅଛି । ବୈପାରିଗୁଡ଼ାରୁ ସିଧା ପଶ୍ଚିମ ଆଡ଼େ ଗୋଟିଏ ଖରାଦିନିଆ ରାସ୍ତା ଗୁପ୍ତେଶ୍ବର ମହାଦେବଙ୍କ ଗୁମ୍ଫା ପର୍ଯ୍ୟନ୍ତ ଯାଇଛି । ଏହି ରାସ୍ତାର ବାଇଶ କଲୋମିଟର ଦୂରରେ ଗାଁ କଡ଼କୁ ରାମଗିରି । ଏଠାରୁ ଘଞ୍ଚ ଅରଣ୍ୟ ଦେଇ ସେଇ ପଶ୍ଚିମକୁ ଏକ ସରଳରେଖାରେ ଗତି କଲେ ବାର

କିଲୋମିଟର ଦୂରରେ ପଡ଼ିବ ତାସ୍ତ ପର୍ବତ । ତାରା ପର୍ବତ ତଳେ କୋଲାବ ନଦୀ । ନଦୀ ଡେଇଁବା ମାତ୍ରେ ହିଁ ତେନ୍ତୁଳଗୁମ୍ମା ଦୃଷ୍ଟିଗୋଚର ହେବ ।

ତେନ୍ତୁଳଗୁମ୍ମା ଏକ ଅନ୍ଧକୂପ ଭିତରେ ରହିଲା ପରି ପଡ଼ି ରହିଛି । ତାର ଉତ୍ତର ଓ ପଶ୍ଚିମରେ କାନ୍ଥ ପରି ରହିଛି ତୁଳସୀ ଡଙ୍ଗର, ଲେକ ଓ ଲୁଲେରୁ ପର୍ବତ । ପୂର୍ବପଟେ ଏକ ସରଳରେଖାରେ ବହୁଦୂର ଯାଏ ଗତି କରିଛି କୋଲାବ ନଦୀ । ତାର ସେ କଡ଼କୁ ତାସ୍ତ ପର୍ବତ । ତେନ୍ତୁଳଗୁମ୍ମାଠୁ ତିନି କିଲୋମିଟର ଦୂରରେ କୋଲାବ ନଦୀରେ ଏକ ସାତ ମିଟରର ସୁନ୍ଦର ଜଳପ୍ରପାତ । ତା ଉପରକୁ ଗୁପ୍ତେଶ୍ୱର ମହାଦେବଙ୍କ ଗୁହା ।

ଏହି ତେନ୍ତୁଳଗୁମ୍ମାରେ ଆଜକୁ ୭୫ ବର୍ଷ ପୂର୍ବେ କୋରାପୁଟର ସର୍ବଭାରତର ଗୌରବ, ଶହୀଦ, ବୀର ଲକ୍ଷ୍ମଣ ନାୟକ ଜନ୍ମ ହୋଇଥିଲେ ।



# ତିନି

ଆଜକୁ ପଞ୍ଚସ୍ତରି ବର୍ଷ ତଳେ ଲକ୍ଷ୍ମଣ ନାୟକଙ୍କ ଜନ୍ମବେଳର କଥା ।

ଆଜିର ମାଲକାନଗିରି ସବ୍‌ଡିଭିଜନ ସେ କାଳର ମାଲକାନଗିରି ତାଲୁକା । ସେତେବେଳେ ଏହି ତାଲୁକାର ବଣ ଜଙ୍ଗଲ ଆହୁରି ଭୟଙ୍କର, ଆହୁରି ବିପଦପୂର୍ଣ୍ଣ ଥିଲା । ଅଗଣାଗିଣ ବନସ୍ତ । ଭିତରେ ପଶିଲେ ପଥିକ ବାଟବଣା ହୁଏ । ତଳେ ସୂର୍ଯ୍ୟକିରଣ ପଡ଼େ ନାହିଁ । ଚାରିଆଡ଼େ ଅନ୍ଧାର, ନିର୍ଜ୍ଜନ । ପଦଟିଏ ଝଡ଼ି ପଡ଼ିଲେ ଜଣାପଡ଼େ ସତେ ଯେପରି କୁଳଟାଏ ପଡ଼ିଲା । ବଣମାନ ବାଘ, ଭାଲୁ, ହାତୀ, ସାପ ଆଦି ନାନା ଭୟଙ୍କର ହିଂସ୍ର ଜନ୍ତୁରେ ପୂର୍ଣ୍ଣ ।

ଏଣେତେଣେ ଦଶ ବାର ମାଇଲ ଦୂରରେ ଛୋଟ ଛୋଟ ଗାଁଟି ମାନ । ଲୋକସଂଖ୍ୟା ଢେର କମ୍ । ଗାଁ ଭିତରେ ରାସ୍ତା ନାହିଁ । ଘରକୁ ଘର ଲଗାଲଗି । କୁଡ଼ିଆଗୁଡ଼ିକ ଅତି ଛୋଟ । ଭିତରଟା ଅନ୍ଧାର ସନ୍ତସନ୍ତ । ପିଣ୍ଡାସବୁ ଛପର । ଟିକିଏ ବର୍ଷା ହେଲେ ସାରା ଗାଁଟି କାଦ ସଡ଼ ସଡ଼ ।

ଲୋକମାନେ ଦରିଦ୍ର । ଫଙ୍ଗଲା । ପରିଧାନ, ଅଣ୍ଟାରେ ଖଣ୍ଡେ କୌପୁନୀ ମାତ୍ର । ମୁଣ୍ଡରେ ଗାମୁଛାଟିଏ ଗୁଡ଼ା ହୋଇଥାଏ । ଖାଦ୍ୟ ହେଉଛି ଧାନ ଓ ମାଣ୍ଡିଆ । ମାତ୍ର କୃଷୋପଯୋଗୀ ଜମି ପରିମାଣ ଅତି ଅଳ୍ପ । ଚାଷ ମଧ୍ୟ ପୁରୁଣାକାଳିଆ । ଛୁଅ, ବେଉଷା ନାହିଁ । ଧାନ

ସବୁଦିନେ ଚାଷ ବି ହୁଏ ନାହିଁ । ଉତ୍ପାଦନ ବହୁତ କମ୍ । ତେଣୁ ଯାହା ଉତ୍ପାଦନ ହୁଏ ସେତିକେ ତିନି ଚାରି ମାସ ଭିତରେ ସରିଯାଏ । ଲୋକେ ପ୍ରାଣ ବଞ୍ଚାଇବାକୁ ବଣ ଉପରେ ନିର୍ଭର କରନ୍ତି । ସେମାନେ ଖାଆନ୍ତି ବଣରେ ମିଳୁଥିବା ନାନାପ୍ରକାର କନ୍ଦା, କୋଳି, କେନ୍ଦୁ, ବାଉଁଶ କରଡ଼ି, ଚେନ୍ନୁଳି ମଞ୍ଜି, ଆମ୍ବଟାକୁଆ, ସଲପ ଗୁଣ୍ଡି, ମହୁଲ, ଢାଇପିମ୍ପୁଡ଼ି (ଥପେଙ୍ଗ) ଇତ୍ୟାଦି । ବଣରେ ପଶୁ ପକ୍ଷୀ ଶିକାର କରିବାକୁ ହୁଏ । ଅନାହାରରେ ଅନେକ ଦିନ କାଳ କାଟିବାକୁ ପଡ଼େ ।

ଲୋକମାନେ ଅଶିକ୍ଷିତ । ସ୍କୁଲ କି ଚାଟଶାଳୀ ନାହିଁ । ରୋଗାକ୍ରାନ୍ତ ହେଲେ ଡାକ୍ତରଖାନାଟିଏ ମଧ୍ୟ ନାହିଁ । ଡିଶାରିର ଚେରମୂଳ, ତନ୍ତ୍ରମନ୍ତ୍ର ଉପରେ ଭରସା କରିବାକୁ ପଡ଼େ । ଏଣିକିରେ କେହି ମଲେ ମଲା, ଜିଇଁଲେ ଜିଇଁଲା ।

ଗ୍ରୀଷ୍ମ ଦିନେ ପ୍ରବଳ ଗରମ ହୁଏ । ସତେ ଯେମିତି ଭୂମି, ପବନ ଓ ଆକାଶ ସବୁଥିରେ ନିଆଁ ଲାଗି ଯାଇଛି । ବଣ ଭିତରେ ମଧ୍ୟ ପତ୍ରହିନ ଲଣ୍ଡା ଗଛମାନ ଝୋଲା ମାରିଲା ଭଳି ଧକ ଧକ ହୋଇ ପଡ଼ିରହନ୍ତି । ନଈ ନାଳ ଶୁଖିଯାଏ ।

ଗ୍ରୀଷ୍ମ ସରୁ ସରୁ ପ୍ରବଳ ବର୍ଷା । ଏକାଦିକ୍ରମେ ଦଶ ବାର ଦିନ ଧରି ଆକାଶରୁ ମେଘ ଘୁଞ୍ଚେ ନାହିଁ । ପାହାଡ଼ରେ ମେଘ ଲାଗି ରହେ । ଅନବରତ ବର୍ଷା ଢାଳୁଥାଏ । ପାହାଡ଼ରୁ ଅସୁମାରି ଛୋଟ ଛୋଟ ନାଳ ଝୋଲା ଭିତର ଦେଇ ତଳକୁ ଜଳ ପ୍ରବାହିତ ହୁଅନ୍ତି ଶହ ଶହ ଜଳପ୍ରପାତ ସୃଷ୍ଟି କରି । ନଈନାଳ କୂଳ ଲଙ୍ଘି ପ୍ରବଳ ବେଗରେ ଗତି କରେ । ଗୋଟିଏ ଗାଁରୁ ଆଉ ଗୋଟିଏ ଗାଁକୁ ଯିବା ଅସମ୍ଭବ ହୋଇପଡ଼େ । ବଣ ଘଞ୍ଚ ହୁଏ । ହିଂସ୍ର ଜନ୍ତୁ ମାତନ୍ତି । ଘର ଭିତରୁ ସାପ ବାହାରେ । ଝିରଆଡ଼େ ନାନାପ୍ରକାର ବିଷାକ୍ତ ବାଣୁଆ ମାଛି, ଡାଉଁସର ପ୍ରାଦୁର୍ଭାବ ହୁଏ । ଶୀତର ପ୍ରାବଲ୍ୟ ମଧ୍ୟ ସେଇପରି ଭୀଷଣ । ବଣ ପାହାଡରେ କୁହୁଡ଼ିର ଆସ୍ତରଣ ଲାଗି ରହେ । ବହୁ ଲୋକଙ୍କୁ ବଣରେ ବାଘ ଖାଏ । ଏତେବେଳେ ଆଦିବାସୀର ଏକମାତ୍ର ଭରସା ହେଉଛି ଅଗ୍ନି ।

ଲଗାଣ ବର୍ଷା, ସନ୍‌ସନ୍ତଆ ମାଟି ଘର, କାଦୁଅ ପଚ ପଚ ରାସ୍ତା, ବାଦର ଗର୍ଜନ, ସାପର ଦଂଶନ, ହାଡ଼ଥରା ଶୀତ କାକର, ଗ୍ରୀଷ୍ମର ଝାଞ୍ଜି କାହାକୁ ଖାତର ନକରି, ଦୂରରୁ ଶୁଭେ ଆଦିବାସୀ ଗାଁ । ଆଡ଼ରୁ ଭାସି ଆସୁଥିବା ଢେମସା ନାଚର ଢୋଲ ମାଡ଼ ଓ ତୁଣ୍ଡି ଶବ୍ଦ । ରାତିରେ ଚାଲେ ଧାଙ୍ଗଡ଼ା ଧାଙ୍ଗଡ଼ିଙ୍କ ନାଚ ଓ ଗୀତ । ଗୀତ ବାଦ୍ୟର ମୂର୍ଚ୍ଛନାରେ ବଣପାହାଡ଼ ପଶୁପକ୍ଷୀ ସତେ ଯେପରି ସମ୍ମୋହିତ ହୋଇ ଯାଆନ୍ତି । ଯୁବା, ବୁଢ଼ା ସମସ୍ତେ ସଲପ ରସ ପିଇ ଢୁଳୁ ଢୁଳୁ ଆଖିରେ ଢେମସା ନାଚ ଦେଖନ୍ତି ।

ମାଲକାନଗିରି ଆଦିବାସୀମାନଙ୍କର ବାର ମାସରେ ତେର ପର୍ବ ଖରାଦିନେ ଚଇତ୍-ପରବ୍, ବର୍ଷାଦିନେ ବାଲିବସା ପର୍ବ, ଶରତ୍ ଋତୁରେ ନୂଆଖିଆ ପର୍ବ ଏବଂ ଶୀତଦିନେ ପୁଶ୍ (ପୌଷ) ପରବ । ପ୍ରତ୍ୟେକ ପର୍ବର ସ୍ୱରୂପ ଏକାପରି । ଗ୍ରାମଦେବତାଙ୍କ (ମାଉଲି ମା) ପାଖେ ଛେଳି, କୁକୁଡ଼ା, ପାରା ବଳୀ, (ଡୁମା ପୂର୍ବପୁରୁଷ) ପୂଜା, ବଣରେ ଶିକାର, ମଦପିଇବା, ମାଂସ ଖାଇବା, ନାଚ କରିବା, ଗୀତ ଗାଇବା ଏବଂ ମଉଜ କରିବା । ଗାଁ ଟି ଯାକର ଲୋକ ଏକାଠି ହୁଅନ୍ତି, ଗୋଟିଏ ଘର ପରି ।

କଷ୍ଟବେଳେ ହାଡ଼ଭଙ୍ଗା ପରିଶ୍ରମ । ସେଇ କଳା କଟି କଟି ଦେହ ଉପରେ କେତେ ପାଣି ପଡ଼େ । ଖରା କାକରର ଦୌରାତ୍ମ୍ୟ ଚାଲେ । କେତେ ହିଂସ୍ରଜନ୍ତୁଙ୍କ ନଖ, ଦନ୍ତ ଚିହ୍ନ ରହିଯାଏ ତଥାପି ସେ ନାଚ ଗୀତରେ ମୁଖର । ସେ ତାର କୁଡ଼ିଆଟିକୁ ଭଲ ପାଏ, ଭଲ ପାଏ ତା ଗାଁ । ତଳର ନଈ, ନାଳ ଓ ପାହାଡ଼, ମୁଣ୍ଡ ଉପରର ବର୍ଣ୍ଣବର୍ଣ୍ଣିକା ଆକାଶ ଓ ଖୁଦ ପାଣିଦିଆ ମାଟି ମା ଧରିତ୍ରୀ । ଏଇ ତାର କେଉଁ ଯୁଗରୁ ଚାଲି ଆସୁଥିବା ପୂର୍ବପୁରୁଷଙ୍କ ଜନମ ଭୂଇଁ । ତା ଭିତରେ ଚାଲିଥିବା ପ୍ରକୃତିର ଯାତନାକୁ ସେ କେବେ ବଡ଼ କରି ଦେଖି ନାହିଁ । ଖାଲି ପ୍ରକୃତି କାହିଁକି ମଣିଷର ଉତ୍ପୀଡ଼ନ ବି ତାର ଦେହସୁହା । ଏଇ ଉତ୍ପୀଡ଼କ ପରଦେଶୀ, ଯାହାଡ଼ ସେ ପଟୁ ଆସୁଥିବା କେଉଁ ଦୂର ଗାଆଁ ର କି ସହରର ମଣିଷ, ତାର ନାମ ଗାରଡ଼ି କି ଶବନ

ନହେଲେ ପୂଲିସି । ତାର ରାଜନୈତିକ ଚେତନା ନାହିଁ, କିନ୍ତୁ ସେ ଏତିକି ଜାଣେ ବଣର ବାଘଠୁ ଏଇ ମଣିଷଙ୍କ ଉପଦ୍ରବ ବେଶୀ ହିଂସ୍ର ।

ବୃହତ୍ତର ପରିପ୍ରେକ୍ଷୀରେ ଏହାର ଉପରେ ଆଲୋକପାତ କରିବାକୁ ଗଲେ ଆମକୁ ଭାରତବର୍ଷର ତତ୍କାଳୀନ ରାଜନୈତିକ ପରିସ୍ଥିତି ଆଡେ ଆଖି ପକାଇବାକୁ ହେବ । ସେତେବେଳେ ଭାରତ ପରାଧୀନ । ବ୍ରିଟିଶମାନେ ଶାସନ କରୁଥାନ୍ତି । ବ୍ରିଟିଶ ଶାସନ ତଳେ ଭାରତର ସମସ୍ତ ରାଜା । ତେଣୁ ସରକାର ଓ ରାଜାଙ୍କର ଦ୍ୱୈତ ଶାସନ ଚାଲେ ଗାଁ । ଗହଳରେ । ସରକାରଙ୍କ ଜନର ମୁଖ୍ୟ କାର୍ଯ୍ୟଥିଲା ଆଇନ ଶୃଙ୍ଖଳା ରକ୍ଷା । ତେଣୁ ପୁଲିସ୍ ଓ ବଗୁର ବିଭାଗ ତାଙ୍କ ହାତରେ । ରାଜାଙ୍କ ଅଧୀନରେ ଥିଲା ରାଜସ୍ୱ ଆଦାୟ ଓ ଜଙ୍ଗଲ ସମ୍ପଦ । ସେଥିପାଇଁ ରାଜାମାନେ ରେଭେନ୍ୟୁ ଇନ୍ସପେକ୍ଟର ଜଙ୍ଗଲ ରକ୍ଷୀ ନିଯୁକ୍ତ କରୁଥିଲେ ।

ରାଜସ୍ୱ ଆଦାୟ ଓ ରାଜକର୍ମଚାରୀଙ୍କ ସୁଖ ସୁବିଧା ଖୋଜିବାକୁ ରାଜାମାନେ ପ୍ରତି ଗାଁରେ ନାୟକ ବା ମୁସ୍ତାଦାର ନିଯୁକ୍ତ କରନ୍ତି । ଛୋଟିଆ ଗାଁ ହେଲେ ଦୁଇ ବା ତତୋଧିକ ଗ୍ରାମ ପାଇଁ ଗୋଟିଏ ମୁସ୍ତାଦାର ରହେ । ସେତେବେଳେ ଅଳ୍ପ କେତେକ ଗାଁରେ ଲୋକେ ଆପଣା ନାଁରେ ଜମି ପଟ୍ଟା କରାଇ ନେଇଥିଲେ । ଅନ୍ୟ ଗ୍ରାମଗୁଡିକର ସମସ୍ତ ଜମି ରାଜାଧୀନ । ମୁସ୍ତାଦାର ତାର ତତ୍ତ୍ୱାବଧାରକ । ସେ ଲୋକଙ୍କ ଭିତରେ ଜମି ବାଣ୍ଟି ଫସଲ ଆମଦାନୀବେଳେ କର ବା ଶିସ୍ତ ଆଦାୟ କରେ । ଆଦାୟ କରାଯାଇଥିବା ଧନରୁ ପୂର୍ବ ନିର୍ଦ୍ଧାରିତ ପରିମାଣ ରାଜାଙ୍କ ଅମିନ ପାଖରେ ଭେଟି କରିବାକୁ ପଡ଼େ । ବଳକା ଯାହା ରହିଲା ସେ ସବୁ ମୁସ୍ତାଦାର ନିଏ । ସୁତରାଂ ଚାଷ କରିବାକୁ ହେଲେ ନାୟକର ଆଜ୍ଞାବହ ହେବାକୁ ପଡ଼ିବ, ନଚେତ୍ ହାତରୁ ଜମି ଯିବ । ଏପରି ଗାଁକୁ ମୁସ୍ତାଦାରୀ ଗ୍ରାମ କୁହାଯାଏ । ନାୟକ ବା ମୁସ୍ତାଦାର ଗ୍ରାମର ଏକପ୍ରକାର ଜମିଦାର । ତା ଅଧୀନରେ ସମସ୍ତ ଗ୍ରାମବାସୀ ।

ଗ୍ରାମଗୁଡ଼ିକୁ ବେଳେବେଳେ ଶବ୍ଦିନ (ରେଭେନ୍ୟୁ ଇନସପେକ୍ଟର), ଗାରଡ଼ (ଫରେଷ୍ଟ ଗାର୍ଡ଼) ଓ ପୋଲିସ ଆସନ୍ତି । ଗ୍ରାମବାସୀଙ୍କ ଉପରେ ସେମାନଙ୍କର କ୍ଷମତା କାହିଁରେ କଣ । ସେମାନେ ଯାହାଠୁ ଯାହା ମାଗିବେ, ତାହା ପାଇବେ । ନଚେତ୍ ମାଡ଼ ବାଆଇ ଛଡ଼େଇ ନଆସିବ । ସେମାନଙ୍କ କଥା ତଳେ ପଡ଼ିବାର ନୁହେଁ । ନାୟକ ସେମାନଙ୍କର ଆଜ୍ଞାଧୀନ ।

ଗ୍ରାମବାସୀମାନେ ନିତାନ୍ତ ସରଳ, ନିଷ୍କପଟ, ଶଗୃାସୀ ଓ ଅଶିକ୍ଷିତ । ସେଇ ସରଳତାର ସୁଯୋଗ ନେଇ ଉଭୟ ରାଜକର୍ମଚାରୀ ଓ ସରକାରୀ ଲୋକ ସେମାନଙ୍କ ଉପରେ ଯାଚ୍ଛତା ଅତ୍ୟାଚାର କରନ୍ତି । ଗାରଡ଼ କ ଯେକୌଣସି ହେଉ, ଆଦିବାସୀ ପାଖରେ ସେ "ପ୍ରଭୁ", "ଅଧିକାରୀ" । ସେ ତାକୁ ମାରିପାରେ, ଖଟାଇପାରେ, ବିନା କାରଣରେ ଦେହରୁ ଚାଲ ଉତାରିପାରେ । ଗାଁକୁ ଆସିଲେ ଏମାନଙ୍କର ଗୋଡ଼ ତଳେ ପଡ଼େ ନାହିଁ । ଗାଁକୁ ଗାଁ ସବାରରେ ବୁହା ହୋଇ ଚାଲନ୍ତି ।

ପୁଣି ଜୟପୁର ରାଜାଙ୍କର ଯେ କୌଣସି କାମରେ ଗାଁବାଲା ବେଠି ଖଟିବାକୁ ବାଧ୍ୟ । ଏହା ଚିରକାଳୀନ ବହୁ ପ୍ରଚଳିତ କଳଙ୍କିତ ବେଠି ବଗାରି ପ୍ରଥା । ଏହି ପ୍ରଥାନୁଯାୟୀ କେଉଁ ଦୂର ଦେଶରେ ରାସ୍ତାଟିଏ କ କୋଠା ତିଆରି ଚାଲିଲେ ନାୟକମାନେ ଆପଣା ଗାଁରୁ ପାଳି କରି ଲୋକ ପଠାନ୍ତି । ସେଇ କେତେ ଦିନ ସେମାନେ ହେବେ ମୂଲିଆ କିନ୍ତୁ ମୂଲ ପାଇବେ ନାହିଁ ନିଜ ହାତରୁ ଭତିଆ (ଦୈନିକ ଖାଦ୍ୟ) ନେଇ କିଛିଦିନ ଦୂର ସ୍ଥାନରେ କଠୋର ପରିଶ୍ରମ କରିବାକୁ ପଡ଼େ । ମାଡ଼ ନଖାଇ ଫେରିଲେ ତ ଭାଗ୍ୟବାନ୍ ବୋଲିବାକୁ ହେବ । ଏହା ନିଗ୍ରୋମାନଙ୍କ କ୍ରୀତଦାସ ପ୍ରଥାଠାରୁ ଆହୁରି ଅମାନୁଷିକ । କାରଣ ଏଠି ମୂନିବ ଦାସର ରକ୍ତମାଂସ ଶୋଷେ ଅଥଚ ତାକୁ ପୋଷେ ନାହିଁ । ରଡ଼ିମ୍ ସେଇପରି ଏକ ନୃଶଂସ କାର୍ଯ୍ୟ । ଏହି ପ୍ରଥା ଅନୁସାରେ ଜଣେ ରାଜକର୍ମଚାରୀ ଗୋଟିଏ ଗାଁରେ ସ୍ୱଇଚ୍ଛାନୁଯାୟୀ ଯେ କୌଣସି ଜିନିଷ ନେଇପାରିବ । ସେ ଇଚ୍ଛା କଲେ ସାମାନ୍ୟ କିଛି ପଇସା ଇନାମ ବା ପୁରସ୍କାର ଭାବେ ଦେଇପାରେ । ଯଥା—ଗୋଟିଏ ୪୦ ଟଙ୍କା ମୂଲ୍ୟର

ଛେଳକୁ ସେ ସାଙ୍ଗୋଟି ଟଙ୍କା ଫୋପାଡ଼ି ଦେଇ ନେଇ ଯାଇପାରେ । ଏହି ମୂଲ୍ୟ ଉପରେ କୌଣସି ପ୍ରଶ୍ନ ଉଠାଯାଇପାରିବ ନାହିଁ । ବଚସା ହେଲେ ମାଲିକ ମାଡ଼ ଖାଇବା ସାର ହେବ । ଗୋଟିଏ ଗ୍ରାମରେ ଯାହା ଜଣେ କର୍ମଚାରୀ ଏଦରେ ଛୁଣ୍ଡାଏ, ତାକୁ ଜଣେ ଗ୍ରାମବାସୀ କାଉଡ଼ (ଭାର) କରି କର୍ମଚାରୀର ଦୁରନ୍ତ ବାସଗୃହରେ ପହଞ୍ଚାଇ ଦେବାକୁ ହେବ । କେବଳ କର୍ମଚାରୀ କାହିଁକି ସହରର ବୁଦ୍ଧିଆ ଲୋକେ ଓ ସାହୁକାରମାନେ 'ଗଡ଼ମ୍' ଦ୍ୱାରା ଲୋକଙ୍କଠୁ ଅନେକ ଜିନିଷ ଖୁବ୍ ଶସ୍ତାରେ ପାଇଯାଆନ୍ତି । ଜମିରେ ଧାନ ପାଚିଛି, ସାହୁକାର ହିସାବ କରିନିଏ କେତେ ଅମଳ ହେବ । ହଜାରେ ଟଙ୍କାର ଶସ୍ୟକୁ ସେ ଶହେ ଟଙ୍କାରେ ଆଗଧୁରା ଯାଚେ । ଆଦିବାସୀ ହିସାବ କରି ଜାଣେ ନାହିଁ । ତତ୍ ସଙ୍ଗେ ସଙ୍ଗେ ସେ ସଦା ଅଭାବୀ । ସେ ରାଜି ହୋଇଯାଏ । ମହାଜନ ଶହେ ଟଙ୍କା ଦେଇ ହଜାରେ ଟଙ୍କାରେ ସମ୍ପତ୍ତି ହାତ ପଇଠ କରେ ।

କର୍ମଚାରୀଙ୍କ ବିଷ ଦୃଷ୍ଟିରୁ ରକ୍ଷା ପାଇବା ପାଇଁ ଯୁବତୀ ଝିଅମାନଙ୍କ ମୁଖକୁ—ଚିହ୍ନ ବିଚିହ୍ନ କରି ବିରୂପ କରିଦେବା ଛଡ଼ା ଅନ୍ୟ ଉପାୟ ନଥାଏ ।

ଗାଁର ମାଲିକ, ମୁସ୍ତାଦାର ମଧ୍ୟ ଅନେକ ଗ୍ରାମରେ ଶୋଷଣ ଓ ଅତ୍ୟାଚାର କରେ । ସେ ଅନ୍ୟ ଅଞ୍ଚଳର ଶୋଷକ ଋଣଦାତା ସାହୁକାର ଭୂମିକା ଗ୍ରହଣ କରେ । ବିଷ ପୂର୍ବରୁ ଅଳ୍ପ ସାହାଯ୍ୟ ଦେଇ ଅମଳବେଳେ ତାର ଦଶଗୁଣ ଆଦାୟ କରିବା ନାୟକର ଅଭ୍ୟାସ ହୋଇପଡ଼େ ।

ସକଳ ପ୍ରକାର ଅତ୍ୟାଚାର ଓ ଜୁଲୁମକୁ କନ୍ଧ ଆଦିବାସୀ ବିନା ପ୍ରଶ୍ନରେ ମୁଣ୍ଡପାତି ସହିନିଏ । ଅନ୍ୟର ନିଷ୍ପେଷଣକୁ ସେ ଅନ୍ୟାୟ ବୋଲି ଭାବି ପାରେ ନାହିଁ । ତା ପାଖରେ ଏଗୁଡ଼ିକ ପ୍ରାକୃତିକ ନିୟମ ପରି ଗୋଟିଏ ଗୋଟିଏ ପ୍ରଥା କେଉଁ ବାପା ଅଜା ଅମଳରୁ ଗଢ଼ି ଆସୁଛି । ତାର ପୂର୍ବପୁରୁଷମାନେ କରିଥିଲେ ସେ ବା ନ କରିବ କାହିଁକି ? ଯିଏ ଯାହା କହିଲି ସେଥିରେ ତଥମ୍ (ସମ୍ମତ) ଯେ ଆଜ୍ଞା, ମହାପ୍ରଭୁ ।

ରାଜା ଓ କର୍ମଚାରୀମାନେ ମଧ୍ୟ ଏମାନଙ୍କୁ ଶିକ୍ଷିତ କରିବାକୁ ଚାହାଁନ୍ତି ନାହିଁ । ସେମାନେ ଚାହାନ୍ତି ଆଦିବାସୀ ଚେଳି ପରି ଉଜାମରି ରହୁ । ଏପରି ରହିଲେ ଯାଇ ରାଜାର ପ୍ରଭୁତ୍ୱ ବେଶୀ ଦିନ ରହିବ, ଲୋକେ ତାଙ୍କୁ ମାନିବେ । ଆଦିବାସୀର ପିଠିରେ ଚଢ଼ି କର୍ମଚାରୀମାନେ ଆତପାତ ହୁଅନ୍ତି, ତାର ଝାଳ ଚପୁଡ଼ ସହରରେ ଚକ୍‌କଣ ରାସ୍ତା କରାଯାଏ, ରାଜ ଉଆସ ତିଆରି ହୁଏ ଅଥଚ ତା ପାଇଁ କମ୍ବା ତା ଗାଁ ପାଇଁ କିଛି ହୁଏ ନାହିଁ । ସେଇ କାଦ ସଡ ସଡ ମାଟ୍ଟି ଭଣ ଭଣ ଗାଁ । ତେବେ ଯାହା ହେଉ ପଛେ ସେ ମୂକ ।

ଏତେ ଲଯ୍ୟାତନା ଭିତରେ ବି ତାର ବଣଥରା ଢୋଲ ମାଡ଼, ଡଂଗୁଡ଼ୁଙ୍ଗାର କରୁଣ ରାଗିଣୀ ଧାଙ୍ଗଡ଼ମାନଙ୍କ ଗୁଜୁରି ବାଡ଼ିର ଝୁମ୍‌ଝୁମା ଶବ୍ଦ ଏବଂ ଯୁବକ ଯୁବତୀଙ୍କ ସାଇଁଲଡ଼ ନାଚ ବନ୍ଦ ହେବାର ନୁହେଁ । ଧାଂଙ୍ଗ ବସାରୁ ପ୍ରେମିକ ପ୍ରେମିକାଙ୍କ ହୃଦ ଯେନାଯେନ ଗୀତର ସୁଅ ଗଡି ଚାଲେ କୋଲବ ନଦୀର କଳ କଳ ସଙ୍ଗୀତ ସହିତ ତାଳ ମିଳାଇ । ବଂଦ ହୁଏ ନାହିଁ ତାର ଦୂର ହାଟକୁ ଯିବା, କିଛି କଣିବାକୁ ଥାଉ ବା ନଥାଉ । ପିମ୍ପୁଡ଼ି ପରି ମଣିଷର ଧାର ଛୁଟେ ଲୁଲେରୁ, ସାଲମି, ମାତଲ କମ୍ବା ଖଇରପୁଟ ହାଟକୁ । ସେଠି ସେ ଅନ୍ୟ ଗାଁର କେତେ ବନ୍ଧୁ ସହୋଦରଙ୍କୁ ଭେଟିବ । କେତେ ଦୁଃଖସୁଖ ପଚାଇବ । ଏ ବର୍ଷ ବର୍ଷା କେମିତି, କେଉଁ ନାଳରେ ବଢ଼ି ହୋଇଛି, କାହାକୁ ବାଘ ନେଇ ନେଲା, କେଉଁମାନେ କଳା (ମେଲେରିଆ) ଜରରେ ପଡ଼ି ମଲେଣି ।



# ଘର

ଏହି ଶତାବ୍ଦୀର ଆଦ୍ୟରେ, ଯେତେବେଳେ ଆଦିବାସୀମାନେ ଅକଥନୀୟ ଅତ୍ୟାଚାରରେ ଜର୍ଜରିତ, ସେତିକିବେଳେ ମାଲକାନଗିରିର ଅଗନାଗି ବନସ୍ତ ଭିତରେ ଲକ୍ଷ୍ମଣ ନାୟକ ତେନ୍ତୁଳିଗୁମ୍ମା ଗ୍ରାମରେ ୧୮୯୯ ସାଲ ନଭେମ୍ବର ୨୨ ତାରିଖରେ ଜନ୍ମଗ୍ରହଣ କରିଥିଲେ । କଥାରେ କହିଲା ପରି ଲକ୍ଷ୍ମଣ ନାୟକ ଥିଲେ ଗୋଟିଏ ବଣମଲ୍ଲୀ । ସେ ଏ ଦେଶର ଜଣେ ବିଖ୍ୟାତ ଦେଶଭକ୍ତ ଶହୀଦ, ଅଥଚ ବଣମଲ୍ଲୀ ଯୋଗୁଁ ତାଙ୍କର ଫୋଟଟିଏ ସୁଦ୍ଧା ନାହିଁ, ସେ କିପରି ଦେଖିବାକୁ ଥିଲେ ଜାଣିବା ପାଇଁ । ଲୋକ ବର୍ଣ୍ଣନାରୁ ହିଁ ସେଇ ରୂପ କଳ୍ପନା କରିବାକୁ ଆମେ ବାଧ୍ୟ ।

ଲକ୍ଷ୍ମଣଙ୍କ ବାପାଙ୍କ ନାମ ପଦଲମ୍ ନାୟକ । ଜାତିରେ ସେ ଭୂମିଆ । ଭୂମିଆମାନେ ସାଧାରଣତଃ କୃଷୀ । କିନ୍ତୁ ଗ୍ରାମବାସୀଙ୍କ ମନୋନୟନ ଅନୁଯାୟୀ ଜୟପୁର ରାଜା ପଦଲମ୍‌ଙ୍କୁ ବେଜୁଣିଗୁଡ଼ା, ଲେକଗୁଡ଼ା, ଅଁଳାଗୁଡ଼ା ଓ ତେନ୍ତୁଳିଗୁମ୍ମାର ମୁସ୍ତାଦାର ନିଯୁକ୍ତ କରିଥିଲେ । ଏହି ଚାରୋଟି ଗାଆଁରେ ପ୍ରାୟ ଦୁଇଶହ ଘର । ଲୋକସଂଖ୍ୟା ପ୍ରାୟ ଏକ ହଜାର । ସବୁଠାରୁ ବଡ଼ ତେନ୍ତୁଳିଗୁମ୍ମା । କୋଲାବ ନଦୀ ଡେଇଁ ବେଜୁଣିଗୁଡାକୁ ଯିବାକୁ ହୁଏ । ରାମଗିରି ଓ କୋଲାବ ନଦୀ ଅନ୍ତର୍ଗତ ବିରାଟ ଅରଣ୍ୟର କିୟଦଂଶ ମଧ୍ୟ ପଦଲମ୍ ଅଧୀନରେ । ପଦଲମ୍ ଜଣେ ଯୋଗ୍ୟ ଓ ଲୋକପ୍ରିୟ ଆଦିବାସୀ ନେତା ଥିଲେ । ଗ୍ରାମବାସୀମାନେ ତାଙ୍କୁ ଭଲ ପାଉଥିଲେ ଓ ତାଙ୍କ କଥା ମାନୁଥିଲେ । ପଦଲମ୍ ଅକ୍ଷର ଚିହ୍ନୁଥିଲେ, ସାମାନ୍ୟ ଲେଖି ପାରୁଥିଲେ । ପଦଲମ୍ ନାୟକ

ଥିଲେ ବଣାକ ବସୁମନ୍ତ । ପାର୍ଶ୍ୱକାୟ । ଦେହ ଭିତରେ ଦୃଢ଼ତା ଲୋକର ବଳ ଖୁବ୍ ହୋଇଥିଲା । ପ୍ରଖର ବୁଦ୍ଧି ଓ କର୍ମଠତା ଯୋଗୁଁ ସେ ରାଜାଙ୍କର ମଧ୍ୟ ପ୍ରିୟପାତ୍ର ଥିଲେ ।

ପଦଲମ୍‌ଙ୍କର ତିନି ପୁଅ । ବଡ଼ ସନଆ, ତା ତଳକୁ ଲକ୍ଷ୍ମଣ ଓ ଧନ ନାୟକ । ପଦଲମ୍‌ଙ୍କର ଦୁଇ ଭାଇ । ସେମାନଙ୍କର ବଂଶଗୋଣ୍ଡି କୁଟୁମ୍ବ କଲୁ ସମସ୍ତେ ଏକାଠି ରହନ୍ତି । ତେଣୁ ପଦଲମ୍‌ଙ୍କର ଏକ ବଡ଼ଘର । ମଝିରେ ଅଗଣା, ତିନି ପଟେ ଲଗାଲଗି ହୋଇ ଆଠ ବଖରା ମାଟି ଘର । ଅନ୍ୟାନ୍ୟଙ୍କ ଘର ପିଣ୍ଡାସ ଛପର । ଅଗଣାର ଯେଉଁ ପଟଟି ଖୋଲା, ତାକୁ ଅଲ୍ପ ଛାଡ଼ି ଗୋଟିଏ ବଡ଼ ମେଲା ମଣ୍ଡପ । ଅଲ୍ପ ଉଚ୍ଚ ପିଣ୍ଡା, ଘରପଟେ ଦେଢ଼ ହାତ ଉଚ୍ଚାର ମାଟି କାନ୍ଥ ଓ ଉପରେ ଛଣଛପର । ଏଇଠି ପଦଲମ୍ ବସା ଉଠା କରନ୍ତି । ଗ୍ରାମବାସୀମାନେ ଏଠାରେ ରୁଣ୍ଡ ହୁଅନ୍ତି । ସେଇ ମଣ୍ଡପ ସାମନାରେ ଲମ୍ବି ଯାଇଛି ତେନ୍ତୁଳିଗୁମ୍ମାର ମୁଖ୍ୟ ରାସ୍ତା । ତାର ଦୁଇପଟ ଘର । ସୁତରାଂ ମଣ୍ଡପରେ ବସିଲେ ଗାଁଟିଯାକର କାର୍ଯ୍ୟକଳାପ ଦେଖାଯାଏ । ମଣ୍ଡପ ସେ ପଟକୁ ଗୋରୁ ଶାଳ । ରହନ୍ତି ଗାଈ, ବଳଦ, ଛେଳି ଓ ମେଣ୍ଢା । ପଦଲମ୍‌ଙ୍କର ନିଜର ପ୍ରାୟ ଶହେ ଏକର ଜମି ।

ବଡ଼ ପରିବାର ହେତୁ ଲକ୍ଷ୍ମଣ ମୁସ୍ତାଦାରର ପୁଅ ହୋଇ ସୁଦ୍ଧା ଆଡ଼ା ଚୌଡ଼ାରେ ବାଲ୍ୟକାଳ କଟାଇ ନାହାନ୍ତି । ନିଜର ସମସ୍ତ କାମ ନିଜେ ହିଁ କରନ୍ତି । ପିଲାଦିନରୁ ସେ ବିଲକୁ ଯାଉଥିଲେ, ଗୋରୁ ଗାଈ ବଣ ପଡ଼ିଆରେ ଚରାଉଥିଲେ । ଗାଁର ଅନ୍ୟ ପିଲାଙ୍କ ସଙ୍ଗେ ସେ ମିଶୁଥିଲେ, ଖେଳୁଥିଲେ ଓ ବୁଲୁଥିଲେ । ଅନ୍ୟ ପିଲାଙ୍କ ପରି ସେ ଲେଙ୍ଗୋଟି ମାରୁଥିଲେ, ବର୍ଷାରେ ତିନ୍ତୁଥିଲେ ଓ ଖରାରେ ସିଝୁଥିଲେ ।

ଅନ୍ଧକୂପ ଭିତରେ ରହିଥିଲେ ମଧ୍ୟ ତେନ୍ତୁଳିଗୁମ୍ମା ଏକ ସ୍ୱଚ୍ଛଳ ଗ୍ରାମ ଥିଲା । ପ୍ରାୟ ଷାଠିଏ ଘର ପାରେଂଗା, ଡ଼ମ୍ବ, କୁଟିଆ, ରଣା, କମାର, ପାଇକ ଆଦି ନାନା ଜାତିର ଲୋକ ଏକାଠି ରହନ୍ତି । ଲକ୍ଷ୍ମଣର ସମସ୍ତଙ୍କ ଘରେ ଅବାଧ ପ୍ରବେଶ । ସେମାନେ ଯାହା କରନ୍ତି

ଲକ୍ଷ୍ମଣ ସେ ସବୁ ଶିଖନ୍ତି । ତେନ୍ତୁଳିଗୁମ୍ମାର ସମସ୍ତେ ଶିକାରୀ । ସମସ୍ତଙ୍କ ଘରେ ଧନୁଶର । ଲକ୍ଷ୍ମଣ ନାୟକ ମଧ୍ୟ ପିଲାଦିନୁ ଶିକାର ପ୍ରିୟ ଥିଲେ ।

ତେନ୍ତୁଳିଗୁମ୍ମାରୁ ସାକମି ପାଏ ବିସ୍ତୃତ ଅଞ୍ଚଳରେ ସ୍କୁଲଟିଏ କି ଡାକ୍ତରଖାନାଟିଏ ନାହିଁ । ତେଣୁ ସମସ୍ତେ ଶ୍ରୀଅକ୍ଷର ବିବର୍ଜିତ । ତେଣୁ ପିଲାଦିନେ ଲକ୍ଷ୍ମଣ ନାୟକ ମଧ୍ୟ ପାଠ ପଢ଼ି ନଥିଲେ କିନ୍ତୁ ବାରବର୍ଷ ବୟସରେ ବାପା ପଦଲମ୍ ନାୟକ ଲକ୍ଷ୍ମଣଙ୍କୁ ଅକ୍ଷର ଶିଖାଇଥିଲେ । ଅକ୍ଷର ଶିକ୍ଷା ହୋଇଥିଲା ବାଲି ଉପରେ । ସେତିକିରେ ପାଠପଢ଼ା ଶେଷ । ସେ ଆପଣାର ନାଁ ଲେଖିପାରୁଥିଲେ । ବହି ଦେଖି ପଢ଼ି ପାରୁଥିଲେ । ତେନ୍ତୁଳିଗୁମ୍ମାରେ ଲୋକେ ଦେଶୀଆ ଭାଷା କହନ୍ତି । ଏହା ପରଜା, ଗାଦବା ଓ ଓଡ଼ିଆ ମିଶାମିଶି ।

ଲକ୍ଷ୍ମଣ ନାୟକ ଆପଣା ଗାଁକୁ ଭାରି ଭଲ ପାଉଥିଲେ । ତାର ଅପରୂପ ଶୋଭାରେ ସେ ମୁଗ୍ଧ ହେଉଥିଲେ । ଗାଁ ପାଖରେ ଗୋଟିଏ ଆମ୍ବ ତୋଟା ଏବଂ ତାକୁ ଲାଗି କୁଳୁକୁଳୁ ହୋଇ କୋଲାବ ନଦୀ ବହି ଯାଉଛି । ଏହି ତୋଟାରେ ପିଲାମାନଙ୍କର ଡାକମାଙ୍କୁଡ଼ି ଖେଳ ବେଶ୍ ଜମେ । ନଦୀରେ ପହଁରା ହୁଏ ଏବଂ ମାଛ ଧରା ହୁଏ । ନଈ ଶୁଖିଗଲେ ତାର ଶେଯରେ ନାନା ରଙ୍ଗର ନାନା ଆକୃତିର ମସୃଣ ପଥରମାନ ଦେଖିବାକୁ ମିଳେ । ନାଲି, ନେଳି, ସବୁଜ, ଧଳା ଆଦି ବିଭିନ୍ନ ରଙ୍ଗର ପଥର ଗୋଟାଇ ପିଲାମାନେ ଖେଳ ଘରମାନ କରି ଖେଳନ୍ତି ।

କୋଲାବ ନଦୀ ଲକ୍ଷ୍ମଣଙ୍କର ସବୁଠାରୁ ବେଶି ପ୍ରିୟସ୍ଥଳୀ । ଋତୁ ଋତୁରେ ତାର ରୂପ ବଦଳେ । କେତେବେଳେ ଭୀମ, ଉଗ୍ର, ପ୍ରଚଣ୍ଡ ତ ଆଉ କେତେବେଳେ ପ୍ରସନ୍ନ, ଛଳଛଳ । ତାର ଉଭୟ ରୂପକୁ ଲକ୍ଷ୍ମଣ ତନ୍ମୟ ହୋଇ ଦେଖନ୍ତି । ନଦୀର ଟିକିଏ ଉପର ମୁଣ୍ଡରେ ଗୁପ୍ତେଶ୍ୱର ଗୁହା ଆଡ଼କୁ ଗୋଟିଏ ସୁନ୍ଦର ଜଳପ୍ରପାତ । ଏଇଠି ଅନେକ ସମୟ କଟାନ୍ତି ।

କୋଲାବ ସେ ମୁଣ୍ଡର ତାର ପର୍ବତ ମଧ୍ୟ ଲକ୍ଷ୍ମଣଙ୍କ ପିଲାଦିନର ଏକ ପ୍ରିୟ ବିହାର ସ୍ଥଳୀ । ଏଠାରେ ସେ ପ୍ରଚୁର ଶିକାର କରନ୍ତି । ଖୁବ୍

ଉପରକୁ ଚଢ଼ିଯାଆନ୍ତି । ସେଠାରୁ ଉପରର ଖୋଲା ଆକାଶ ଓ ତଳର ନଦୀକୁ ଲକ୍ଷ୍ୟ କରି ସେ ବସି ରହନ୍ତି । ସାଙ୍ଗସାଥିମାନେ ଚାରିଆଡେ ବୁଲିବୁଲି କରି ଫେରିଆସି ତାଙ୍କୁ ଡ଼ାକିବା ପର୍ଯ୍ୟନ୍ତ ସେ ସେଇଠି ବସିଥାନ୍ତି । ଏଇ ବାଲ୍ୟ ସାଥିମାନଙ୍କ ଭିତରୁ ମୁଖ୍ୟ ଥିଲେ ବନସିଂ ଭୂମିଆ, ଘାଲୁଡ଼ମ୍ବ, ଗୋବିନ୍ଦ ମୁଦୁଲି ଇତ୍ୟାଦି । ଶ୍ରୀ ଗୋବିନ୍ଦ ମୁଦୁଲି କହନ୍ତି ଯେ ଲକ୍ଷ୍ମଣଙ୍କ ପିଲାଦିନଟି ହସଖୁସିରେହିଁ ବିତି ଯାଇଥିଲା । ସକାଳରୁ ସଞ୍ଜଯାଏ ଖାଲି ଖେଳ, ଲଖ ଶିଖା (ଶିକାର ଅଭ୍ୟାସ), ଗଛ ଚଢା, ନଦୀ ପହଁରି ଦୌଡ଼ାଦୌଡି ଓ କୁସ୍ତି କସରତ । ଏମିତିରେ ବାରବର୍ଷ କଟିଗଲା ।

ତେର ବର୍ଷ ପରେ ଅନ୍ୟ ଆଦିବାସୀ ପିଲାଙ୍କପରି, ତାଙ୍କର ଦାୟିତ୍ୱବୋଧ ବଢ଼ିଲା । ସେ ବେଶି ସମୟ ଚାଷବାସରେ ଓ ଶିକାରରେ କଟାଇଲେ । ବଣରୁ ଫଳମୂଳ ସଂଗ୍ରହ ପାଇଁ ଅନ୍ୟମାନଙ୍କ ସହିତ ଯାଆନ୍ତି । ସବୁଠାରୁ ସେ ବେଶି ସୁଖ ପାଆନ୍ତି ଶିକାରରେ । ସେ ହୋଇଗଲେ ଜଣେ ଅବ୍ୟର୍ଥ ଶିକାରୀ । ଦୌଡ଼ିବା ପଶୁ, ଉଡିବା ପକ୍ଷୀ କେହି ହେଲେ ତାଙ୍କଠାରୁ ନିସ୍ତାର ପାଆନ୍ତି ନାହିଁ ।

ଷୋଳ ବର୍ଷବେଳକୁ ଲକ୍ଷ୍ମଣ ଜଣେ ତରୁଣ ଜୁଆନ୍ । ଡେଙ୍ଗା । ରଙ୍ଗମାଟିଆ । ସାମାନ୍ୟ କୁଞ୍ଚିକୁଞ୍ଚିଆ ବାଳ । ଦେହର ଶକ୍ତ ମାଂସପେଶୀ ଫୁଟି ଉଠିଲାଣି । ଅଣ୍ଟାରେ ଲେଙ୍ଗୁଟି । ମୁଣ୍ଡରେ ଗାମୁଛାର ମୁଣ୍ଡବନ୍ଧା (ପଗଡ଼ି) । ଖୋଲା ଦେହ । ତେଲ ମାଖିଲାପରି ଚକ୍‌ଚକ । ବେଳେବେଳେ ଦେହରେ ଗ୍ରେଞ୍ଜି ଅଙ୍ଗି ।

ଏତିକବେଳେ ଅନ୍ୟ ଆଦିବାସୀ ତରୁଣଙ୍କଠୁ ସେ ବେଶି ଗୀତ ଗାଉଥିଲେ । ଯାହାକୁ ଦେଖନ୍ତି, ତା' ନାଁରେ ଦି' ପଦ ଗୀତ ଯୋଡ଼ି ଦିଅନ୍ତି । ଚଇତ ପରବ ଆସିଲେ ତ ମାସ ମାସ ଧରି ଗୀତ ନାଚର ଧୂମ ଉଠେ । ଧାଂଡ଼ାଧାଂଡି ମେଳରେ ସାଧାରଣତଃ ଯୁବକମାନେ ଆପଣାର ମନଲାଖି ବାନ୍ଧବୀଙ୍କୁ ପ୍ରଶଂସା କରି ଗୀତ ଯୋଡ଼ନ୍ତି । ଗୀତରେ ଗୀତରେ ନାନା ପ୍ରଶ୍ନୋତ୍ତର ବି ଚାଲେ । ଲକ୍ଷ୍ମଣଙ୍କର ଅନେକ ଗୀତ କିନ୍ତୁ ନଦୀ, ନାଳ, ପାହାଡ଼, ପର୍ବତକୁ ନେଇ ।

ଏଇ ସମୟରେ ଲକ୍ଷ୍ମଣ ଥିଲେ ଖୁବ୍ ଜିଦ୍‌ଖୋର । ଯାହା ସେ ଭଲ ବୋଲି ଭାବୁଥିଲେ ତାହାହିଁ କରୁଥିଲେ । ଉଦାହରଣ ସ୍ୱରୂପ ତାଙ୍କ ନିଜ ଘରେ ଖିଆପିଆରେ ଭେଦଭାବ ଥିଲା । ଭୂମିଆମାନେ ଉମ୍ବ ଘରେ ଖାଆନ୍ତି ନାହିଁ । କିନ୍ତୁ ଲକ୍ଷ୍ମଣ ନାୟକଙ୍କୁ ଏହା ଭଲ ଲାଗେ ନାହିଁ । ତାଙ୍କ ସାଂଗ ସାଲୁ ଉମ୍ବ ଘରେ ସେ ଲୁଚିକି ଛପାଇ ଖାଉଥିଲେ । ବିଶେଷତଃ ଗାଁକୁ ଅମିନ କି ଗାରଡ ଲୋକଙ୍କଦ୍ୱାରା ସବାରୀରେ ବୁହା ହୋଇ ଆସିଲେ ତାଙ୍କ ହାଡ ଜଳୁଥିଲା । ସେଇପରି ଗାଁରୁ କାହାର କିଛି ଜୋର ଜବରଦସ୍ତ କରି ନେଇଗଲେ, ମାଡ଼ ଗାଳି ଦେଲେ ସେ ସହିପାରୁ ନଥିଲେ । ତାଙ୍କୁ ଏସବୁ କାର୍ଯ୍ୟ ଦେଖିବାକୁ ମଧ୍ୟ ଏତେ ଘୃଣା ଲାଗେ ଯେ କେହି 'ଅଧିକାରୀ' ଗାଁକୁ ଆସିଲେ ସେ ପ୍ରାୟ ଘରେ ରହନ୍ତି ନାହିଁ । କାରଣ ଯେ କୌଣସି କର୍ମଚାରୀ ଆସିଲେ ତାଙ୍କ ଘରେ ହିଁ ବସା ବାନ୍ଧନ୍ତି । ତାର ସକଳ ତତ୍ତ୍ୱ ନିଅନ୍ତି ଲକ୍ଷ୍ମଣଙ୍କ ବାପା ।

ଯେତେ ଯାହା ଜୁଲୁମ ହେଲେ ମଧ୍ୟ ଲୋକେ କିଛି କହନ୍ତି ନାହିଁ । ଏଣେ ଛେଚି ବାଡ଼େଇ ହୋଇ କାନ୍ଦୁଥିବେ; ତେଣେ ତୁଣ୍ଡରୁ କୌଣସି ଆପତ୍ତି ଅଭିଯୋଗ ବାହାରିବ ନାହିଁ । ଘରକୁ ଆସି ମଧ୍ୟ ସେଇ 'ହାଇରେ ଦଇବ !' "ହେ ଭଗବାନ !" ଇତି । ଖାଲି କପାଳକୁ ନିନ୍ଦିବା ସାର । ଏସବୁ କଥା କଣ୍ଠାରେ ମଧ୍ୟ ସେ ବ୍ୟତିବ୍ୟସ୍ତ ହୋଇଯାନ୍ତି । ସେ କେତେ ଲୋକଙ୍କୁ ବୁଝାନ୍ତି ଆପତ୍ତି କରିବା ପାଇଁ କିନ୍ତୁ କେହି ପିଲାଟିର କଥାକୁ ଶୁଣିବାକୁ ନାରାଜ ।

ଶେଷରେ ସେ ନିଜେ ଗାଁ ଲୋକଙ୍କ ତରଫରୁ ବାପାଙ୍କ ନିକଟରେ ଆପତ୍ତି କଲେ । ଗାରଡର ଓ ପୁଲିସର ଗୋଡ଼ ଅଛି । ସେ କାହିଁକି ନ ଚାଲିବ ? ଯିଏ ଯାହା ଆଦରରେ ସମ୍ଭାଳୁଛି, ତାକୁ କାହିଁକି ସେମାନେ ଜୋର୍ ନେବେ ? ଗ୍ରାମବାସୀମାନେ ଚକିତ ହୋଇ ଶୁଣନ୍ତି ଲକ୍ଷ୍ମଣଙ୍କ କଥାମାନ । କେଉଁ ଯୁଗରୁ ଅଶୁଣା କଥା ସେ କହୁଛନ୍ତି । ପଦଲମ୍ ହସନ୍ତି ଏବଂ ଲକ୍ଷ୍ମଣଙ୍କୁ ବୁଝାଇବାକୁ ଚେଷ୍ଟା କରନ୍ତି ଯେ ଏସବୁ ବହୁ କାଳରୁ ପ୍ରଚଳିତ ପ୍ରଥା । ସେ ଚେଷ୍ଟା କଲେ ହବ ନାହିଁ । ତାଙ୍କ ବଦଳରେ

ଅନ୍ୟ କେହି ନାୟକ ହେଲେ ମଧ୍ୟ ଏସବୁ ବଦଳିବାର ନୁହେଁ । ଗ୍ରାମବାସୀମାନେ ପଦଲମ୍‌ଙ୍କୁ ସମର୍ଥନ କରନ୍ତି । ଲକ୍ଷ୍ମଣ ନାୟକ ହତାଶ ହୁଅନ୍ତି । କିନ୍ତୁ ବାପାଙ୍କ ଯୁକ୍ତି ତାଙ୍କ ମନକୁ ପାଏ ନାହିଁ ।

୧୯ ବର୍ଷ ବୟସରେ ଲକ୍ଷ୍ମଣ ବିବାହ କରିଥିଲେ ସାନଗୁମ୍ମା ଗାଁର ଭୂମିଆଙ୍କ ଝିଅ ମଙ୍ଗୁଲିଙ୍କୁ । ମଙ୍ଗୁଲିଙ୍କ ବୟସ ସେତେବେଳେ ସତର ବର୍ଷ । ଦେଖିବାକୁ ସୁନ୍ଦର । ବେଶୀ ଢେଙ୍ଗା ନୁହନ୍ତି । ସାବନା ରଂଗ । ଭାରି କର୍ମଠ । ଘର ପାଇଟିରୁ ଜମିଚାଷ ସବୁ କାମରେ ସେ ପଟୁ । କିନ୍ତୁ ନାଚ, ଗୀତ ଯାହା ପ୍ରତ୍ୟେକ ଆଦିବାସୀ ଝିଅଙ୍କଠାରେ ଦେଖିବାକୁ ମିଳେ, ତାହା ମଙ୍ଗୁଲିଙ୍କ ଦେଇ ହୁଏ ନାହିଁ । ତା ପାଇଁ ସେ କେବେ ଚେଷ୍ଟା ବି କରିନାହାନ୍ତି । ତାଙ୍କର ବିଶେଷତ୍ୱ ହେଲା ସେ ପାହାନ୍ତି ପହରୁ ଶୋଇବା ଯାଏ କୌଣସି ନା କୌଣସି କାମରେ ମଜ୍ଜିଥାନ୍ତି ।

ବିବାହର ଦେଢ ବର୍ଷ ପରେ ଲକ୍ଷ୍ମଣଙ୍କର ପୁଅଟିଏ ହୋଇଥିଲା । ତାର ନାମ ରଘୁନାଥ ।

ତରୁଣ ଅବସ୍ଥାରୁ, ବିବାହ ବନ୍ଧନରେ ଆବଦ୍ଧ ହେବା ସୁଦ୍ଧା ସେ ଲୋକଂକର ଦୁଃଖ ଯାତନାକୁ ଦୂର କରିବା ପାଇଁ ସତତ ଚେଷ୍ଟିତ ଥିଲେ । ସେ ଲୋକଂକର ସାମାଜିକ ଓ ଗୋଷ୍ଠୀଗତ ଜୀବନକୁ ଏଥିପାଇଁ ପ୍ରୟୋଗ କରିବାକୁ ଇଚ୍ଛୁକ ଥିଲେ । ସେ ଜାଣିଥିଲେ, ଲୋକେ ଭାରି ମଣିଷ । ଥରେ ମାନିଥିଲେ ଜୀବନ ଯିବ ପଛେ ବିଶ୍ୱାସ ତୁଟିବ ନାହିଁ । ତତ୍ ସଙ୍ଗେ ସଙ୍ଗେ ସେମାନେ ସରଳ । ଗୁଡାଏ ଯୁକ୍ତିତର୍କ ସେମାନେ ବୁଝି ପାରନ୍ତି ନାହିଁ । ଖାଲି ମନେଇ ପାରିଲେ ହେଲା । ଗାଁ ଗୁଡ଼ିକର ପ୍ରଧାନ ବଳ ହେଉଛି ତାର ଏକତା । ସମସ୍ତେ ସମସୁଖୀ ଓ ସମଦୁଃଖୀ । ଛେଳପଲପରି ଗୋଷ୍ଠୀ ଜୀବନ । ଜଣେ ଯାହା କରେ ଆଉ ଜଣେ ତାହା କରେ । ତା ପଛକୁ ତା ପଛ ହୋଇ ଗାଁଟା ସାରା ସେଇ କାମରେ ମାତି ଉଠନ୍ତି । ଏହି ଗୋଷ୍ଠୀ ଜୀବନରେ ସେମାନେ ଏତେ ବଳବାନ ଯେ ବଣର ମହାବଳ ବାଘ ମଧ୍ୟ ତାଙ୍କୁ ଡ଼ରେ ।

ତଥାପି ଏହାକୁ ରାଜା ବିରୁଦ୍ଧରେ ବା ପାରମ୍ପରିକ ଶୋଷଣ ବିରୁଦ୍ଧରେ ପ୍ରୟୋଗ କଲାବେଳେ ସମସ୍ତ ଯୋଜନା ଭୁଷୁଡ଼ି ପଡ଼େ । ତାର ଏକମାତ୍ର କାରଣ ହେଉଛି ଅନ୍ଧବିଶ୍ୱାସ । ପରମ୍ପରାକୁ ଭାଙ୍ଗିବାକୁ କେହି ରାଜି ନୁହନ୍ତି । ସେଥିପାଇଁ ଲୋକଙ୍କର ହୋଇ ତାଙ୍କ ତରଫରୁ ଆପତ୍ତି ଉଠାଇଲେ କେହି ପିଠିରେ ପଡ଼ୁନାହାନ୍ତି ।

ଲକ୍ଷ୍ମଣ ଅନେକ ସମୟରେ ଅପଦସ୍ଥ ଓ ଅପମାନିତ ହୁଅନ୍ତି ସତ କିନ୍ତୁ ଚେଷ୍ଟାରୁ କେବେ ନିବୃତ୍ତ ହୁଅନ୍ତି ନାହିଁ । ସେ କ୍ରମେ ଅନୁଭବ କଲେ ଯେ ପ୍ରଥମେ ଲୋକଙ୍କୁ ସେବା ଓ ଉପକାରଦ୍ୱାରା ଆକୃଷ୍ଟ ନିଜର କରିବାକୁ ହେବ । ତା ପରେ ଯାଇ ସେମାନଙ୍କୁ ସଙ୍ଗଠିତ କରି ଅନ୍ଧବିଶ୍ୱାସ ଓ ଭୟ ବିରୁଦ୍ଧରେ ଅଭିଯାନ କରି ହେବ । ଦ୍ୱିତୀୟତଃ ଗୋଟିଏ ଗ୍ରାମର ଲୋକେ ସଙ୍ଗଠିତ ହେଲେ ଚଳିବ ନାହିଁ । ଅନେକ ଗ୍ରାମରେ ଜାଗରଣ ଆବଶ୍ୟକ । ଲକ୍ଷ୍ମଣ ଜାଣିଥିଲେ ଏ ପ୍ରକାର ସଙ୍ଗଠନ ଗଢ଼ି ତୋଳିବା ବିଶେଷ ଆୟାସସାଧ୍ୟ । ତଥାପି ତାହା ଅନିବାର୍ଯ୍ୟ ।



## ପାଞ୍ଚ

୧୯୨୧, ଯେତେବେଳେ ଲକ୍ଷ୍ମଣ ବାଇଶ ବର୍ଷର ଯୁବକ, ସେ ସମୟରେ ଆହୁରି କେତେକ ବିଶିଷ୍ଟ ଘଟଣା ଭାରତବର୍ଷରେ ଘଟିଗଲା । ଭାରତର ନିର୍ଯାତିତ ପରାଧୀନ ନାଗରିକଙ୍କ ମନରେ ସ୍ୱାଧୀନତାର ବୀଜ ଅଙ୍କୁରିତ ହେବାରେ ଲାଗିଲା । ମହାତ୍ମା ଗାନ୍ଧୀଙ୍କ ଡ଼ାକରାରେ ବ୍ରିଟିଶ୍ ସରକାରଙ୍କ ବିରୁଦ୍ଧରେ ଅସହଯୋଗ ଆନ୍ଦୋଳନର ସୂତ୍ରପାତ ହେଲା । ଜାତି-ଧର୍ମ-ନିର୍ବିଶେଷରେ ଅନେକ ଭାରତୀୟ ଏଥିରେ ଭାଗ ନେବାକୁ ଆରମ୍ଭ କଲେ । ଏତଦ୍ଦ୍ୱାରା ସରକାରଙ୍କ ଦମନ ବଢ଼ିବାରେ ଲାଗିଲା । ବିଭିନ୍ନ କ୍ଷେତ୍ରରେ ଟିକସ ବୃଦ୍ଧି କରାଗଲା । କେତେକ ନୂଆ କଟକଣା ପ୍ରୟୋଗ ହେଲା । ଏହାର ପ୍ରଭାବରେ ଆଦିବାସୀଙ୍କୁ ଜଙ୍ଗଲ ପାଣି, ହାଟପାଣି ଆଦି ନାନା ଟିକସ ଦେବାକୁ ପଡ଼ିଲା ।

ଦରିଦ୍ର ଆଦିବାସୀଙ୍କୁ ଏହା ବହୁତ ବାଧିଲା । ସର୍ବଭାରତୀୟ ସ୍ତରରେ ଯାହାହେଉ ପଛେ, ବ୍ରିଟିଶ୍ ସରକାରଙ୍କ ଦମନ ସେମାନେ ଆଉ ବେଶି ସମ୍ଭାଳି ନପାରି, ଆପେ ତାର ସମାଧାନ କରିବା ପାଇଁ ଲଢ଼େଇ କରିବାକୁ ବାହାରି ପଡ଼ିଲେ । ପାହାଡ଼ ଅରଣ୍ୟର ଗିରି କନ୍ଦରରେ ଠାଏ ଠାଏ ଆଦିବାସୀମାନେ ସିପାହୀ ବିଦ୍ରୋହ ପରି ସଶସ୍ତ୍ର ବିଦ୍ରୋହରେ ମାତି ଉଠିଥିଲେ । ଏହି ସମୟରେ କୋରାପୁଟ ଜିଲ୍ଲାର ଗୁଣପୁର ଓ ରାୟଗଡ଼ରେ "ଗୁମ୍ମା ଗାଇବା ମେଳି" ସଂଘଟିତ ହୋଇଥିଲା । 'ଗାଇବା ପିଲା ମେଳି'ର ସର୍ଦ୍ଦାରମାନେ ବଣ ଜଙ୍ଗଲରେ ଆତ୍ମଗୋପନ କରି, ସମୟ ଜଣି

ବ୍ରିଟିଶ୍ ଆଧିପତ୍ୟ ବିରୁଦ୍ଧରେ ଲଢ଼ୁଥିଲେ । ସେହିପରି ପାରଳାଖେମୁଣ୍ଡି ଅଞ୍ଚଳର ମୁଠାଦାରମାନେ ସରକାର ବିରୁଦ୍ଧରେ ମେଳି କରିଥିଲେ । କୋରାପୁଟକୁ ଲାଗି ମଧ୍ୟପ୍ରଦେଶରେ ମଧ୍ୟ ଆଦିବାସୀଙ୍କର ଯେଉଁ ବିଦ୍ରୋହ ହୋଇଥିଲା ତାହା ବସ୍ତର ରାଜ୍ୟ ମେଳି ନାମରେ ଖ୍ୟାତ ।

କିନ୍ତୁ ଏହି ସମୟରେ ସବୁଠାରୁ ବଡ଼ ଚମକପ୍ରଦ ଘଟଣା ହେଉଛି ଆନ୍ଧ୍ର ପ୍ରଦେଶର ଆଲ୍ଲୁରି ସୀତାରାମ ରାଜୁଙ୍କ 'ରମ୍ପା ଫିତୁରି' ବା ମେଳି । ଏହା ସହ ଲକ୍ଷ୍ମଣ ନାୟକଙ୍କ ଇଲାକା ମାଲକାନଗିରି ଏବଂ ଆନ୍ଧ୍ରପ୍ରଦେଶର ମାଡଗୁଲ ପାର୍ବତ୍ୟାଞ୍ଚଳରେ ସଂଘଟିତ ହୋଇଥିଲା ।

ଏଜେନ୍ସି କମିଶନଙ୍କ ଅନ୍ଧାରି ମୂଳକ କାରବାର ଭିତରେ ଥିଲେ ଆଲ୍‌ଫ୍ରେଡ୍ ବେଇସନ୍ ନାମକ ଜଣେ ଡେପୁଟି ତହସିଲ୍‌ଦାର । ସେ ଅତ୍ୟନ୍ତ ବେଠିପ୍ରିୟ । ତାଙ୍କର ଅତ୍ୟାଚାର ସୀମାତୀତ ହୋଇଯିବାରୁ ସେ ଅଞ୍ଚଳର ପ୍ରଜାମାନେ ଭୟଙ୍କର ମେଳି କଲେ । ଏହାର ଅଧିନାୟକତ୍ୱ ନେଲେ ଉଚ୍ଚ ଶିକ୍ଷିତ ଯୁବକ ଶ୍ରୀ ଆଲ୍ଲୁରି ସୀତାରାମ ରାଜୁ । ଏହି ମେଳି ଆମ କୋରାପୁଟରୁ ମାଲକାନଗିରି ଅଞ୍ଚଳରେ ମଧ୍ୟ ଦେଖା ଯାଇଥିଲା । ଏଥିରେ ବିଶେଷ ଭାବରେ ସଂପୃକ୍ତ ଥିଲେ କୋୟାମାନେ । ମେଳିକୁ ଆନ୍ଧ୍ରରେ ଫିତୁରି କହନ୍ତି । ତା'ର ନେତାକୁ କୁହାଯାଏ ଫିତୁରିଦାର ।

ଏହା ଅସହଯୋଗ ଆନ୍ଦୋଳନର ସମସାମୟିକ ଘଟଣା । ତିନି ବର୍ଷକାଳ ଏ ସଂଘର୍ଷ ବଡ଼ ଭୀଷଣ ଭାବେ ଚାଲିଲା । ବହୁ ଆଡ଼ରୁ ମିଲିଟାରୀ ଫୌଜ ଆସିଲେ । ଏହି ଫିତୁରୀକୁ ଦବାଇ ଦେବା ସହଜ ସାଧ୍ୟ ବ୍ୟାପାର ନଥିଲା । ସର୍କାରଙ୍କ ଅନେକ ସୈନିକ, ପୁଲିସ୍ ମୃତାହତ ହେଲେ ।

ସୀତାରାମ ରାଜୁଙ୍କ କୋୟା ଜାତୀୟ ସୈନିକମାନେ ସେତେବେଳେ ରାଇଫଲ, ବନ୍ଦୁକ ଆଦି ଆଧୁନିକ ଅସ୍ତ୍ରଶସ୍ତ୍ରଦ୍ୱାରା ସଜ୍ଜିତ ଥିଲେ । ମାଲକାନାଗିରି ଅଞ୍ଚଳରେ ଏହି ମେଳିର ଅନେକ ତତ୍ପରତା ପ୍ରକାଶ

ଯାଇଥିଲା । କଥିତ ଅଛି, ଥରେ ସୀତାରାମ ରାଜୁ ମାଲକାନାଗିରି ତହସିଲ ଅଫିସକୁ ଆସି ପୋଲିସଙ୍କ ଠାରୁ ସମ୍ମାନ ଗ୍ରହଣ କଲେ । ଖଜଣା ଘର ଫିଟାଇଲେ । ଟଙ୍କା ଷ୍ଟାମ୍ପ ଆଦି ପରୀକ୍ଷା କଲେ ଏବଂ 'ମୁଁ ଆସିଥିଲି' ବୋଲି ଦସ୍ତଖତ କରି ଚାଲିଗଲେ । କିନ୍ତୁ କିଛି ନେଇ ନାହାନ୍ତି ।

ମେଳିରେ ଅନ୍ତିମ ଦଶା ଯାହା ହେଉ ନା କାହିଁକି, ଏହା ନିପ୍ପେଷିତ ଆଦିବାସୀଙ୍କ ମନରେ କେତେକ ପରିମାଣରେ ଚେତନା ଜାଗ୍ରତ କରାଇଥିଲା । ସେମାନଙ୍କର ବହୁଦିନର ମେଣ୍ଢାଛାଲ ଖୋଲିଯାଇ ନିଜର ଅସଲି ବ୍ୟାଘ୍ର ରୂପ ପ୍ରକଟିତ କରିପାରିଥିଲା । ଉଦାହରଣ ସ୍ୱରୂପ ଏତିକି ବେଳେ କୋରାପୁଟ ଏସ୍. ପି. ମିଃ ସ୍କଟ ବଣ୍ଡାଘାଟକୁ ଯାଇ ବଣ୍ଡା ଲୋକଙ୍କ ଆଚାର ବ୍ୟବହାର ଉପରେ ଆକ୍ଷେପ କରିବାରୁ ବଣ୍ଡାମାନେ ସେମାନଙ୍କୁ ପ୍ରାଣରେ ମାରି ଦେଇଥିଲେ ।

ଦ୍ୱିତୀୟତଃ ସାହେବମାନେ ବନ୍ଧୁକ ମୁନରେ ଆଦିବାସୀଙ୍କୁ ଆଉ ଡରାଇ ପାରିଲେ ନାହିଁ । ଆଦିବାସୀମାନେ ନିଜେ ମଧ୍ୟ ବନ୍ଧୁକ ଚଳାଇ ପାରିବେ, ତାର ପ୍ରମାଣ ଦେଖାଇ ଦିଆଗଲା । ମାଲକାନଗିରିର ବିଭିନ୍ନ ସ୍ଥାନରେ ଲୋକେ ଶିଖାଶିଖି ହୋଇ ବନ୍ଧୁକର ବ୍ୟବହାର କଲେ । କେତେକ ବିଦେଶୀ ଓ ଆଉ କେତେକ ଗାଁ ତିଆରି ମଧ୍ୟ ।

ଏହି ମେଳିର ପ୍ରଭାବ ଲକ୍ଷ୍ମଣ ନାୟକଙ୍କ ଉପରେ ପଡିଥିବାର ଅନେକ ପ୍ରମାଣ ମିଳେ । ତେନ୍ତୁଳିଗୁମ୍ମାର ନିକଟତମ ପୋଲିସ୍ ଷ୍ଟେସନ୍ ମାତିଲି । ଲକ୍ଷ୍ମଣଙ୍କ ବାପା ପଦଲମ୍ ବେଳେବେଳେ ମାତିଲି ଯାଆନ୍ତି । ତାଙ୍କର କେତେକ ଆତ୍ମୀୟ ପାଙ୍ଗାମ୍, ମାଲକାନଗିରି ଆଦିରେ ଥିବାରୁ ସେଠାକୁ ଯିବାକୁ ପଡେ । ଲକ୍ଷ୍ମଣ ନାୟକ ମଧ୍ୟ ଏହିସବୁ ଗ୍ରାମକୁ କେବେ କେମିତି ଯାଆନ୍ତି । ବାଟରେ ସାଲିମିରି କିଛି ଦୂରରେ କଲୁର୍ କୋଣ୍ଡା ଗ୍ରାମ । ଲୁଲେରୁ ପର୍ବତର ପାଦଦେଶରେ ଗାଁ ଅଛି । ସେଠାର ଜଣେ କୋୟା ଯୁବକ, ନାମ ଚନ୍ଦ୍ର କୁଟିଆ ରମ୍ପା ବିଦ୍ରୋହରେ ଯୋଗ ଦେଇଥିଲେ ।

ଚନ୍ଦ୍ରକୁଟିଆ ଓ ଲକ୍ଷ୍ମଣ ନାୟକଙ୍କର ପରିଚୟ ହୋଇଥିଲା । ଆଦିବାସୀଙ୍କର ଦୁଃଖମୋଚନ ପାଇଁ ସାହେବମାନଙ୍କ ସହିତ କିପରି ମୁହାଁମୁହିଁ ଯୁଦ୍ଧ ହୁଏ ଖୋଲା ଚଳେ, ପାହାଡ଼ ଉପରେ କିପରି ଆତ୍ମଗୋପନ କରି ଶତ୍ରୁର ମୁକାବିଲା କରାଯାଏ ସେ ସବୁର ଲୋମହର୍ଷଣକାରୀ ଗଳ୍ପ ଚନ୍ଦ୍ରକୁଟିଆ ବଖାଣନ୍ତି । ଲକ୍ଷ୍ମଣ ନାୟକ ଚନ୍ଦ୍ରକୁଟିଆଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । କିଛି ନା କିଛି ବାହାନାରେ ସେ ଘରୁ ବାହାରି ଏହି ଲୁଚିଲାରୁ ପର୍ବତ ଓ କନ୍ଦରକୋଣ୍ଡାରେ ଚନ୍ଦ୍ରକୁଟିଆଙ୍କୁ ସାକ୍ଷାତ କରନ୍ତି । ଏହି ସମୟରେ ସେ ବନ୍ଧୁକ ଚାଳନା ଶିକ୍ଷା କରିଥିଲେ । ଅଳ୍ପଦିନ ଭିତରେ ସେ ବନ୍ଧୁକ ଚାଳନାରେ ପଟୁତା ଅର୍ଜନ କରିଥିଲେ ମଧ୍ୟ । ଅନେକ ଦିନଯାଏ ତାଙ୍କ ପାଖରେ ଗୋଟିଏ ଲମ୍ବା ଓଡ଼ିଆ ନଳୀ ରହିଥିଲା ।

ଲକ୍ଷ୍ମଣ ରମ୍ପା ବିଦ୍ରୋହରେ ଯୋଗ ଦେବାକୁ ଆଗ୍ରହୀ ଥିଲେ । କିନ୍ତୁ ଆପଣା ଲୋକଙ୍କ ସମସ୍ୟାବଳୀରେ ମଧ୍ୟ ସେ ଅଧିକ ସମ୍ପୃକ୍ତ ଥିଲେ । ରମ୍ପା ବିଦ୍ରୋହରେ ଯୋଗ ଦେବା ଦ୍ୱାରା ନିଜ ଇଲାକାର ଦୁଃଖ ଲାଘବ ହେବାର ଆଶା ନାହିଁ । ନିଜର ସମସ୍ୟା ସମାଧାନ ପାଇଁ ଗାଁ ଲୋକେ ନିଜେ ସଙ୍ଗଠିତ ହେବା ଦରକାର । ତା ପାଇଁ ହୁଏତ ସଶସ୍ତ୍ର ବିପ୍ଳବ ଦରକାର ପଡ଼ିପାରେ । ସେଥିପାଇଁ ସେ ନିଜେ ବନ୍ଧୁକ ଚାଳନା ଆଦିରେ ତାଲିମ୍ ପାଇଥିଲେ, ଭବିଷ୍ୟତରେ ଦରକାର ପଡ଼ିପାରେ ବୋଲି । କିନ୍ତୁ ବିଦ୍ରୋହରେ ଯୋଗ ଦେବା ତାଙ୍କର ଅଭିପ୍ରାୟ ନଥିଲା । ଚନ୍ଦ୍ରକୁଟିଆଙ୍କର ମଧ୍ୟ ଇଚ୍ଛା ଥିଲା ଯେ ଦୁହେଁ ମିଶି ମାଲ୍କାନଗିରି ଅଞ୍ଚଳରେ ଏକ ନୂତନ ବିଦ୍ରୋହର ଅଭିଯାନ କରିବେ ।

ଚନ୍ଦ୍ରକୁଟିଆଙ୍କ ସହିତ ବନ୍ଧୁତ୍ୱ ସ୍ଥାପନ ଯୋଗୁଁ ଲକ୍ଷ୍ମଣ ନାୟକଙ୍କର ଅନ୍ୟାନ୍ୟ କେତେକ ଉପକାର ହୋଇଥିଲା । ପ୍ରଥମତଃ ଏକୁଟିଆ ଲୁଚିଲୁ, ଲୋକ ଆଦି ପର୍ବତ, ବଣ ଜଙ୍ଗଲ ବୁଲିବା ଦ୍ୱାରା ସେ ଅତ୍ୟନ୍ତ ସାହସୀ ହୋଇପାରିଥିଲେ । ଦ୍ୱିତୀୟତଃ ଆପଣା ଗାଁ ଛଡ଼ା ଆହୁରି ଅନେକ ଗାଁର ଲୋକଙ୍କ ସହିତ ସେ ପରିଚିତ ହୋଇଥିଲେ ।

ଏହି ଅବସରରେ ସେ ଏକ ବିଶିଷ୍ଟ ବିଦ୍ୟାକୁ ଆୟତ୍ତ କରିଥିଲେ ଯାହାକୁ ଆଦିବାସୀଙ୍କ ଭିତରେ କୁହାଯାଏ ଗୁଣିଆ ଓ ଦିଶାରି ବୃତ୍ତି । ଗୁଣିଆ ହେଉଛି ଡାକ୍ତରୀ । ଜଣେ ଗୁଣିଆକୁ ଜଙ୍ଗଲରେ ମିଳୁଥିବା ପତ୍ର, ଚେର ଇତ୍ୟାଦିକୁ ନେଇ ବୈଦ୍ୟଗିରି, ଝାଡ଼ଣ, ଫୁଙ୍କଣ ଇତ୍ୟାଦି କରିବାକୁ ପଡେ । ଔଷଧ ଗଛମାନ ଚିହ୍ନିବାକୁ ଓ ତାର ଆବଶ୍ୟକୀୟ ଅଂଶମାନ ସାଇତି ରଖିବାକୁ ପଡେ । ବଣ ଭିତରେ ଡାକ୍ତରଖାନା ନଥିବାରୁ ଏହା ବିଶେଷ ପ୍ରୟୋଜନ । ଝାଡ଼ଣ, ଫୁଙ୍କଣ ଏକପ୍ରକାର ମନ୍ତ୍ରବିଦ୍ୟା । ଏହା ଅଦ୍ୟାବଧି ସହରାଞ୍ଚଳରେ ମଧ୍ୟ କେତେକ ସ୍ଥଳରେ ବ୍ୟବହୃତ ହେଉଛି ।

ଦିଶାରି କାମ ହେଉଛି ଦେବାରାଧନା, ପୂଜକର ଦାୟିତ୍ୱ । ଗ୍ରାମଦେବତୀଙ୍କ ପାଖରେ ମନ୍ତ୍ର ବୋଲି ପୂଜା କରିବାକୁ ହୁଏ ଏବଂ ବଳୀ ପକାଇବାକୁ ପଡ଼େ ।

ଏ ଦୁଇଟି ବିଦ୍ୟାରେ ପାରଦର୍ଶିତା ଅର୍ଜିଲେ ଏବେ ମଧ୍ୟ ଯେ କୌଣସି ଲୋକ ଆଦିବାସୀ ଅଞ୍ଚଳରେ ଖୁବ୍ ବିଶ୍ୱାସଭାଜନ ଓ ଲୋକପ୍ରିୟ ହୋଇପାରିବ ।

ଲକ୍ଷ୍ମଣଙ୍କୁ ୨୪ ବର୍ଷ ବୟସରେ ମଙ୍ଗୁଳି ଏକ କନ୍ୟା ସନ୍ତାନ ଜନ୍ମ କରିଥିଲେ । ଝିଅଟିର ନାମ କୌଶଲ୍ୟା ।



# ଛଅ

ଦୀର୍ଘ ଚାରି ପାଞ୍ଚ ବର୍ଷ ଧରି ବ୍ରିଟିଶ୍ ସରକାରଙ୍କ ବିରୁଦ୍ଧରେ କୋୟାମାନଙ୍କ ମେଳି ଚାଲିଲା । ଏହି ଭିତରେ ଲକ୍ଷ୍ମଣଙ୍କ ଯୁବକ ହୃଦୟରେ ସଶସ୍ତ୍ର ବିପ୍ଳବର ଯେଉଁ ଅଗ୍ନିବାଣୀ ଝଂକୃତ ହୋଇଥିଲା ତାହା ବେଶି ଦିନ ରହିଲା ନାହିଁ । ଅଚାନକ ଭାବେ ସେଇ ମେଳିର ଅବସାନ ଘଟିଲା । ସୀତାରାମ ରାଜୁଙ୍କ ଗରିଲା ବାହିନୀ ବ୍ରିଟିଶ୍ ରାଜ୍‌ର ସୈନ୍ୟମାନଙ୍କ ହାତରେ ଆତ୍ମସମର୍ପଣ କରିବାକୁ ବାଧ ହେଲେ । ବହୁ ଲୋକ ମୃତାହତ ହେଲେ । ଅନେକେ ଦ୍ୱୀପାନ୍ତରବାସ ସଜା ପାଇଲେ । ମାଲକାନାଗିରିର ଅରଣ୍ୟାନୀ ପୁଣି ନୀରବ ନିସ୍ତବ୍ଧ ହୋଇଗଲା ।

ନୀରବତା ବ୍ୟାପିଗଲା ମଧ୍ୟ ଲକ୍ଷ୍ମଣଙ୍କ ହୃଦୟରେ । କକୁରକୋଣ୍ଡାକୁ ଯାଇ ସେ ଆଉ ଚନ୍ଦ୍ରକୁଟିଆକୁ ଦେଖିପାରିଲେ ନାହିଁ । ବିପ୍ଳବ ଅବସାନର କାହାଣୀ ସେ ଶୁଣିଲେ । ଚନ୍ଦ୍ରକୁଟିଆ ହୁଏତ ମୃତ । ସଶସ୍ତ୍ର ବିପ୍ଳବର ଆଶା ମନରୁ ମଉଳି ନାହିଁ । ହଠାତ୍ ଯେପରି ରଙ୍ଗମଞ୍ଚର ଯବନିକାପାତ ହେଲା । ଚନ୍ଦ୍ରକୁଟିଆଠୁ ଶିଖିଥିବା ବନ୍ଧୁକ ଚାଳନା ଏବେ ଦରକାର ପଡ଼ିବ କେବଳ ବଣ୍ୟଜନ୍ତୁ ଶିକାର ପାଇଁ । ସେ ତ ସହଜ ଶିକାରୀ । ତେଣୁ ଶିକାରର ଧୂମ୍ ଛୁଟିଲା ।

କିନ୍ତୁ ପରେ ପରେ ଲକ୍ଷ୍ମଣ ଅନେକଟା ଉଦାସୀନ ହୋଇପଡ଼ିଲେ । ପଶୁମାନଙ୍କୁ ହତ୍ୟା କରିବାରେ ଆଉ ସୁଖ ଲାଗିଲାନି ବୋଧହୁଏ । ଏଥର ସେ ଭୂନ ହୋଇ ବସି ରହନ୍ତି ସେଇ ତାରିଜଙ୍ଗର ଉପରେ

ଏଣେ ଗ୍ରାମର ମୁରବୀ ପଡଲମ୍ ନାୟକ ବୃଦ୍ଧ ହୋଇ ଆସିଲେଣି । ନାୟକର ଗୁରୁଦାୟିତ୍ୱ ଛଡ଼ା ଘରର ଅନେକ ସମ୍ପତ୍ତି । ଜମିବାଡ଼ି ପ୍ରାୟ ୮୦ ଏକର । ତା ସହିତ ନଙ୍ଗଳରେ ୨୦ ଏକର ଅଡ଼ାନ । ଗୁଡ଼ାଏ ପଶୁପକ୍ଷୀ । ଏ ସବୁର ରକ୍ଷଣାବେକ୍ଷଣ ଏବଂ ପାଳନ ପୋଷଣ ମହା ଜଞ୍ଜାଳମୟ । ବେଳ ଥାଉ ଥାଉ କାହାକୁ ହେଉ ଏଥିରେ ତାଲିମ୍ ଦେବା ନିହାତି ଦରକାର । ତେଣୁ ତାଙ୍କ କାମରେ ସାହାଯ୍ୟ କରିବାକୁ ବଡ଼ ପୁଅ ସନଆକୁ ପଡଲମ୍ ଅନେକ ସୁଯୋଗ ଦେଇଥିଲେ । କିନ୍ତୁ ସନଆର ସେଥିପ୍ରତି ମୋଟେ ଆଗ୍ରହ ରହିଲା ନାହିଁ । ପିଲାଦିନରୁ ଲକ୍ଷ୍ମଣ ମଧ୍ୟ ବେପରୱାୟ ରହି ଆସୁଥିଲେ । ବେଳେବେଳେ ଦିନ ଦିନ ଧରି ବାହାରେ ରହୁଥିଲେ । କିନ୍ତୁ ଏବେ ସେ ଗାରେ ହିଁ ରହୁଛନ୍ତି । ତେଣୁ ଏଥର ପଡଲମ୍ ଲକ୍ଷ୍ମଣଙ୍କୁ ତାଙ୍କ ପାଖରେ ବସାଇ ଗାଁର ସୁଖ-ଦୁଃଖରେ ଭାଗୀଦାର କରାଇବାରେ ଲାଗିଲେ ।

ଅଳ୍ପଦିନ ଭିତରେ ଲକ୍ଷ୍ମଣ ଗାଁ ସୁଖଦୁଃଖରେ ବିଶେଷ ଭାବେ ଜଡ଼ିତ ହୋଇ-ପଡ଼ିଲେ । ଚିଠି ଶାରି କାମ ଜାଣିଥିବାରୁ ତ ସହଜେ ପ୍ରାୟ ଘରୁ ଖବର ଆସେ ସିବାପାଇଁ । କିଏ ହାରି ଦେହ ବେମାର ହେଲେ, ତାଙ୍କୁ ନ ଡାକିଲେ ନ ଚଳେ । ତେଣୁ ତାଙ୍କର ସବୁ ଘରେ ପ୍ରବେଶ । ସମସ୍ତଙ୍କର ଆପଣାର ସେ । ଏଣେ ବାପାଙ୍କ ପାଖରେ ବସି ସେ ଅନୁଧ୍ୟାନ କରନ୍ତି, କିପରି ଜମି ଗଣ୍ଡଗୋଳ ମେଣ୍ଟାଇବାକୁ ପଡ଼ିବ, ଫସଲ ଅମଳବେଳେ କିପରି ଶିସ୍ତ ଆଦାୟ କରିବାକୁ ହେବ, ତାର କେତେ ଅଂଶ କିପରି ରଜା ଘରେ ଦାଖଲ କରିବାକୁ ହେବ ଇତ୍ୟାଦି ।

ନାୟକ ନ ଥାଇ ମଧ୍ୟ ଏଇ କେତେଦିନ ମଧ୍ୟରେ ଲକ୍ଷ୍ମଣ ଆପଣାର ଚରିତ୍ରବଳ ଓ ନିଃସ୍ୱାର୍ଥପର କାର୍ଯ୍ୟରେ ଲୋକଙ୍କୁ ଖୁବ୍ ଆପଣାର କରିପାରିଥିଲେ । ଲୋକମାନେ ଅଶିକ୍ଷିତ, ଲେଖାପଢ଼ା କି ହିସାବ ପତ୍ର ଜାଣନ୍ତି ନାହିଁ । କେଉଁ ଦୂର ଗାଁର ସାହୁକାର ତାକୁ ଋଣ ଦିଏ କିନ୍ତୁ ଭଣ୍ଡେଇ ଭଣ୍ଡେଇ ତାଠୁ ଦଶଗୁଣ ସୁଧ ନିଏ ଏବଂ ତାକୁ ଜୀବନସାରା ଗୋତି କରି ଖଟାଏ । କୌଣସି ସମୟରେ ଗାଁର କେହି ଋଣ

ଅଣିବାକୁ ଗଲେ ଲକ୍ଷ୍ମଣ ତା ସହିତ ଯାଆନ୍ତି । ଋଣ ଶୁଝିଲାବେଳକୁ ମଧ୍ୟ ସେ ନିଜେ ସାଙ୍ଗରେ ଯାଇ ଭେଟ କରନ୍ତି । ସେ ନିଜେ ହିସାବ ତନଖି କରି, ଦରକାର ପଡ଼ିଲେ ହାତରୁ କିଛି ପଇସା ଦେଇ କେତେ ଗୋତିଙ୍କୁ ସାହୁକାର କବଳରୁ ମୁକ୍ତ କରିଛନ୍ତି । ମୋଟ ଉପରେ କୌଣସି ଲୋକ ଉପରେ କୌଣସି ସମୟରେ କିଛି ଆପଦ ପଡ଼ିଲେ ଆହା ବୋଲି କହିବାକୁ କେହି ଜଣେ ଆତ୍ମୀୟ ଲୋକ ପାଖରେ ପାଇଗଲେ ଯେପରି ।

ବାପାଙ୍କ ସହିତ ଲକ୍ଷ୍ମଣ ଜୟପୁର ରଜାଘରକୁ, ସମର୍ଗିରର ଅମିନ ଅଫିସକୁ ଓ ମାଲିକଙ୍କୁ ନାନା କାର୍ଯ୍ୟରେ ଯାଆନ୍ତି । ଏମିତି ଯିବା ଆସିବାରେ ସେ ସହରର ଓଡ଼ିଆ ଭାଷା ଶିଖିଗଲେ । ଗ୍ରାମରେ ପ୍ରଚଳିତ ଦେଶିଆ ଭାଷା ଓ ସହରରେ ପ୍ରଚଳିତ ଓଡ଼ିଆ ଭାଷାରେ ସେ ସ୍ୱଚ୍ଛଭାବରେ କଥା ହୋଇ ପାରୁଥିଲେ । ସେ କୋୟା ଭାଷା ବି ଜାଣନ୍ତି ।

୧୯୩୦ ମସିହାରେ ପଦଲମ୍ ଅବସର ନେଲା । ଗ୍ରାମବାସୀମାନେ ଲକ୍ଷ୍ମଣ ନାୟକଙ୍କୁ ମୁସ୍ତାଦାର ଭାବେ ମନୋନୀତ କଲେ ।

ଗୋଟିଏ ଗ୍ରାମର ନାୟକ ବା ମୁସ୍ତାଦାର ହେବା ରାଜ୍ୟର ରାଜା ହେବାଠାରୁ ଅଧିକ କଷ୍ଟସାଧ୍ୟ ବୋଲି ଆଦିବାସୀଙ୍କର ଦୃଢ଼ ଧାରଣା । ବହୁଦିନରୁ ଗଡି ଆସୁଥିବା ପ୍ରବାଦ ଅନୁଯାୟୀ ରାଜା ହୁଏତ ଭୋଗୀ, ମଦ୍ୟପୀ ଓ ପାପାତ୍ମା ହୋଇପାରେ । କାରଣ ସେ ଆଦିବାସୀର ଗେଲବସରର ସାନଭାଇ । ସାନଭାଇର ସବୁପ୍ରକାର ଅନ୍ଦାଳି ସହିବ ବଡଭାଇ ଆଦିବାସୀ । କିନ୍ତୁ ଆଦିବାସୀ ଗ୍ରାମର ମୁରବି ବା ନାୟକ ନିଜେ ଭୋଗ କରିପାରିବ ନାହିଁ । ଲୋଭଠାରୁ ଦୂରରେ ମାତ୍ରା ବେଶି ଏଠି । ସବୁବେଳେ ତ ପରକଥା ବୁଝୁଥିବ, ନିଜ କଥା ବୁଝିବାକୁ ବେଳ କାହିଁ । ତା ନିଜ ଜମି ପଡ଼ିଆ ରହିବ । ପର ମୁହଁରେ ହସ ଉକୁଟେଇବାକୁ ଏତେ ସମୟ ଯିବ ଯେ ତା ନିଜ ପିଲା ଘରଜା ଭୋକ ଉପାସରେ ରହିବେ । ଏସବୁ ସହିତ ତାକୁ ହେବାକୁ ପଡ଼ିବ ନିର୍ଭୀକ । ସେ ଭଲ ପର୍ଦ୍ଦିଶ ପାରୁଥିବ, ଦରପୋଡିବେଳେ ଡେଇଁ ପଡ଼ୁଥିବ

ନଆଁ ଲଗାଇବାକୁ । ଶୀତ, ବର୍ଷା, ବଣପାହାଡ଼, ବାଘ, ସାପ କୋଉଥିକୁ ଡର ନଥିବ । ଏସବୁ ଛଡ଼ା ଆଉ ଏକ ଯୋଗ୍ୟତା ବ ଦରକାର । ତାହା ହେଉଛି, ସେ କାଗଜରେ ଲେଖି ପାରୁଥିବ । 'ଅଧିକାଶ୍ମ' (ରାଜକର୍ମଚାରୀ)ମାନଙ୍କ ସହିତ ଭଉରସି କଥା କହିପାରୁଥିବ ।

ଏସବୁ ଗୁଣ ଓ ଯୋଗ୍ୟତା ଥିଲେ ଆପେ ଲୋକେ ତାକୁ ଖୋଜଲେଉ ନାୟକ କରନ୍ତି । ନାୟକ ହେବ ବୋଲି ସେ ନିଜେ କାହାର ହାରସ୍ଥ ହେବା ଦରକାର ପଡ଼େ ନାହିଁ । ଲକ୍ଷ୍ମଣ ନାୟକ ଆପଣାର ଯୋଗ୍ୟତା ଯୋଗୁଁ ମୁସ୍ତାଦାର ହୋଇପାରିଥିଲେ । ସେଇ ଦାୟିତ୍ୱ ତୁଲାଇବାରେ ତାଙ୍କୁ କୌଣସି ଅସୁବିଧା ହୋଇ ନଥିଲା । ଅଳ୍ପ ସମୟ ଭିତରେ ସେ ଲୋକପ୍ରିୟତା ଅର୍ଜନ କରିପାରିଥିଲେ କାରଣ ସେ ଥିଲେ ପରୋପକାରୀ । ରୋଗବ୍ୟାଧି ବା ଜାନପାହାରେ ତାଙ୍କର ଉପସ୍ଥିତି ତ ନହାତ ଦରକାର ।

ଲକ୍ଷ୍ମଣ ନାୟକ ମୁସ୍ତାଦାର ଥିଲା ସମୟରେ କେତେକ ଗ୍ରାମୋନ୍ନତି କାର୍ଯ୍ୟକ୍ରମ ମଧ୍ୟ ହାତକୁ ନେଇଥିଲେ ।

ପ୍ରଥମଟି ହେଉଛି କୃଷିର ଉନ୍ନତି । ତେନ୍ତୁଳଗୁମ୍ମାର ଆଖପାଖ ଗାଁରେ ଅତି ପୁରୁଣାକାଳିଆ ପ୍ରଣାଳୀରେ ଚାଷ ହେଉଥିଲା । ଉର୍ବର ଥିଲେ ମଧ୍ୟ ଜମି ପରିମାଣ କମ୍ । ଚାଷୀ ଭୂଇଁ ଚଷି ଦେଇ ବିହନ ବୁଣିଦଏ । ବେଉସା ନାହିଁକ ନଜାଣି ନାହିଁ । ଧାନ ସହିତ ଘାସ ଓ ବାଲୁଙ୍ଗା ବ ବଢ଼େ । ପୋକଯୋକ ଲାଗି ଫଳ ନଷ୍ଟ ହୁଏ । ଧାନ ପାଚ ଆସିଲେ ଯାଇ ଚାଷୀ ଯାଏ କ୍ଷେତକୁ ବଣୁଆ ପଶୁଙ୍କଠାରୁ ଶସ୍ୟ ରକ୍ଷା କରିବା ଲାଗି । ତା ପରେ ଧାନ କଟା । ଚାଷ ବୋଲନ୍ତେ ଏତକ । ଧାନ ବୁଣିଦେବା ଓ ଚାରିମାସ ପରେ ପାଚଲେ କାଟି ଆଣିବା ।

ଲକ୍ଷ୍ମଣ ଜୟପୁର ଯିବା ବାଟରେ ଚାଷର ନାନା କାର୍ଯ୍ୟକ୍ରମ ଦେଖନ୍ତି । ସେ ସବୁ ବୁଝି ଆସନ୍ତି । ସେଇ ଅନୁସାରେ ଚାଷ କରିବା ପାଇଁ ଲୋକଙ୍କୁ ଉଦ୍‌ବୁଦ୍ଧ କରନ୍ତି । ଆପଣା ବଳରେ ମଧ୍ୟ ସେ ଧରଣର

ଗୃଷ କରି ଅଧିକ ଅମଳ ହେବା ଲୋକଙ୍କୁ ଦେଖାଇଥିଲେ । ଏହିଦ୍ୱାରା ସେ ଅଞ୍ଚଳରେ ଗୃଷପ୍ରଣାଳୀ ବଦଳି ଯାଇଥିଲା ।

ଗୃଷ ଜମି କମ୍ ଥିବାରୁ ଅନେକ ଲୋକ ଜମିହୀନ । ସେମାନେ କୁଲିକାମ ଓ ବଣ ଜଙ୍ଗଲ ଉପରେ ନିର୍ଭର କରି ଚଳନ୍ତି । ଏମାନଙ୍କର ସବୁଦିନେ କାମ ନଥାଏ । ସେହିପରି, ଗୃଷୀମାନଙ୍କର ବି ବର୍ଷସାରା କାମ ନାହିଁ । ଲକ୍ଷ୍ମଣ ଦେଖିଲେ ଯେ ପ୍ରତିଦିନ ଗ୍ରାମରେ ଦଶ ପନ୍ଦର ଜଣ କାମ ନଥାଇ ବସି ରହୁଛନ୍ତି । ଏହି ଲୋକମାନଙ୍କୁ ନେଇ ଲକ୍ଷ୍ମଣ ଗାଁର କେତେକ ଗଠନମୂଳକ କାମରେ ମନୋନିବେଶ କରିଥିଲେ । ଗ୍ରାମ ପୁନର୍ଗଠନ କାମରେ ମୁଖ୍ୟତଃ ରାସ୍ତା ଓସାର କରିବା, ରାସ୍ତା କଡ଼େ କଡ଼େ ନାଳ ଖୋଳିବା, ଅଗପଛ ବାଡ଼ ଥାଇ ନୂଆ ଘରମାନ ତିଆରି କରି ଗ୍ରାମବାସୀଙ୍କୁ ରଖାଇବା ଇତ୍ୟାଦି ପ୍ରଧାନ । ସେ ଗାଁଗୁଡ଼ିକରେ ପ୍ରଚଳିତ ଜାନିଯାତ୍ରା, ନାଚ, ଗୀତ ଓ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ ସବୁକୁ ସୁନ୍ଦର କରିବା ପାଇଁ ଯତ୍ନବାନ ଥିଲେ । ସେଥି-ପାଇଁ ଗ୍ରାମ ପୁନର୍ଗଠନରେ ଗାଁ ମଝିରେ ବହୁତ ଖୋଲାପଡ଼ିଆ ରଖୁଥିଲେ । ସେଇଠି ଗ୍ରାମବାସୀମାନେ ବସିବା ପାଇଁ ବେଞ୍ଚ, ଧାଣ୍ଡା ଧାଣ୍ଡି ଘର ଆଦିର ବନ୍ଦୋବସ୍ତ ହୁଏ । ଏହି ନିର୍ମାଣ କାର୍ଯ୍ୟକ୍ରମରେ ଲୋକେ ଶ୍ରମଦାନ କରନ୍ତି । ପ୍ରତ୍ୟେକ ଘରୁ ଲୋକେ ପାଳି କରି ଆସନ୍ତି । ଏ ପ୍ରକାର କାର୍ଯ୍ୟରେ ଯୁବକ-ମାନେ ବେଶି ଆଗ୍ରହ ପ୍ରକାଶ କରନ୍ତି । ଲକ୍ଷ୍ମଣ ନାୟକ ଏହି ଗ୍ରାମ ପୁନର୍ଗଠନ କାମରେ ଅନେକ ଦାୟିତ୍ୱ ନିଜେ ମୁଣ୍ଡାଇଥିଲେ । ସମଗ୍ର ପରିକଳ୍ପନା ତାଙ୍କ ଯୋଜନାନୁଯାୟୀ କାର୍ଯ୍ୟକାରୀ ହୁଏ । ଭୋର ସକାଳୁ ରାତି ଅଧଯାଏ ସେ ବ୍ୟସ୍ତ ରହନ୍ତି । ଅଳ୍ପଦିନ ଭିତରେ ତେନ୍ତୁଳିଗୁମ୍ମାର ଚେହେରା ବଦଳି ଗଲା । ତାଙ୍କୁ ଦେଖି ପାଖ ପଡ଼ ଗାଁରେ ମଧ୍ୟ ଗ୍ରାମ ପୁନର୍ଗଠନ ଗୃଲିଲା । ସେ ସବୁର ନମୁନା ଆଜିଯାଏ ବି ତେନ୍ତୁଳିଗୁମ୍ମାରେ ଦେଖିବାକୁ ମିଳେ ।

ଲକ୍ଷ୍ମଣ ନାୟକଙ୍କ ଲୋକପ୍ରିୟତା ଓ ପ୍ରଭାବ ଗୃରିଆଡ଼େ ବ୍ୟାପିଲା । ଅନ୍ୟାନ୍ୟ ଗାଁର ନାୟକମାନେ ଆସି ଲକ୍ଷ୍ମଣଙ୍କ ସହିତ ମନ୍ତ୍ରଣା କରୁଥିଲେ ଓ ଉପଦେଶ ନେଇ ଯାଉଥିଲେ ।

ସକାଳୁ ସଞ୍ଜଯାଏ ବହୁ ଲୋକ ଲକ୍ଷ୍ମଣଙ୍କ ପାଖକୁ ନାନା ସମସ୍ୟା ନେଇ ଆସନ୍ତି । ସେ ଯଥାସାଧ୍ୟ ସେଗୁଡିକର ସମାଧାନ କରନ୍ତି । ସନ୍ଧ୍ୟାବେଳେ ଗ୍ରାମ ଚଉପାଢ଼ୀରେ ନ୍ୟାୟ ନିଶାପ ଚାଲେ । ଲକ୍ଷ୍ମଣ ସେଠି ବିଚାରପତିର ସ୍ଥାନ ନିଅନ୍ତି । ତାଙ୍କ ନିଷ୍ପତ୍ତିକୁ ଲୋକେ ମାନି ନିଅନ୍ତି । ଏଗୁଡିକ ସାଧାରଣତଃ ଜମି ଗଣ୍ଡଗୋଳ, ବିବାହର ଝୋଲା, ଶଗଡ଼ ଚୋରି ଆଦିରୁ ସମ୍ଭୂତ ।

ନାୟକ କାମରେ ଶିଘ୍ର ଦାଖଲ କରିବାପାଇଁ ତାଙ୍କୁ ଘରମଗିଣି ଯିବାକୁ ପଡ଼େ । ଜୟପୁର ଓ ତେନ୍ତୁଳିଗୁମ୍ମା ବାଟରେ ପଡ଼ୁଥିବା ଅନେକ ଗ୍ରାମରେ ସେ ପରିଚିତ ହେବାରେ ଲାଗିଲେ । ଏହି ସମୟରେ ଏକ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ତାଙ୍କର ଆନ୍ତରିକତା ବଢ଼ିଯାଇଥିଲା । ତାଙ୍କର ନାମ ହେଉଛି ଶ୍ରୀ ନୀଳକଣ୍ଠ ପାତ୍ର ।

ନୀଳକଣ୍ଠ ପାତ୍ର ଜୟପୁରର ଲୋକ । କିନ୍ତୁ ସେ ଜୟପୁର ବୈପାରିଗୁଡ଼ା ମଧ୍ୟବର୍ତ୍ତୀ ତାଙ୍କର ଗୃହ ଗ୍ରାମ ଘୁମରରେ ବେଶି ସମୟ ରହନ୍ତି । ସେ ଘୁମରର ନେତୃସ୍ଥାନୀୟ ବ୍ୟକ୍ତି । ବଡ଼ ସାଦାସିଧା ଲୋକ । ଯୁବକ, ଖୁବ୍ ଲମ୍ବା ଚୌଡ଼ା ଦେହ । ଦଶମ ଶ୍ରେଣୀ ଯାଏ ପାଠ ପଢ଼ିଥାନ୍ତି । ହିନ୍ଦି ଓ ସ୍ପଷ୍ଟବାଦୀ ଦାନ ଦେଲାବେଳେ ଖୋଲାହାତ । ସୁନ୍ଦର ବକ୍ତୃତା ଦେଇ ଜାଣନ୍ତି ଏବଂ ଅପର୍ଯ୍ୟାପ୍ତ କାମ କରନ୍ତି । ସେ ପ୍ରଚଳିତ ଜାତିଆଣ ପ୍ରଥା ଓ ଛୁଆଁ-ଅଛୁଆଁର ଘୋର ବିରୋଧୀ ।

ଉଭୟ ଲକ୍ଷ୍ମଣ ନାୟକ ଓ ନୀଳକଣ୍ଠ ପାତ୍ର ଥିଲେ ଏକା ପ୍ରକୃତିର ଲୋକ । ତେଣୁ ସେମାନଙ୍କ ଭିତରେ ଅଳ୍ପଦିନ ମଧ୍ୟରେ ନିଗୂଢ଼ ବନ୍ଧୁତା ଜମି ଯାଇଥିଲା । ଉଭୟେ ଉଭୟଙ୍କ ଗାଁକୁ ଯିବା ଆସିବା କରନ୍ତି ।

ମୁସ୍ତାଦାର କାର୍ଯ୍ୟର ବ୍ୟସ୍ତତା ଭିତରେ ମଧ୍ୟ ଲକ୍ଷ୍ମଣଙ୍କ ହୃଦୟ ଭିତରର ଦୁଃଖ ନିର୍ବାପିତ ହୋଇପାରିଲା ନାହିଁ । ସେଇ ବେଠିବଗାରି, ସେଇ ଲାଞ୍ଛନା ଓ ଗଡ଼ମ୍ ପ୍ରଥାର ନିଷ୍ଠୁରତା ତାଙ୍କ ହୃଦୟକୁ ଅହରହ ଫୋପାଡ଼ିବାରେ ଲାଗିଲା । ସେ ମନେ କରୁଥିଲେ ଯେ ସେ ଯେଉଁ ଲୋକଙ୍କର ନାୟକ, ଯେଉଁମାନେ ତାଙ୍କୁ ସ୍ନେହ ଓ ସମ୍ମାନରେ

ବୁଡ଼ାଇ ରଖିଥିଲା, ସେମାନଙ୍କର ଦୁଃଖ କଷ୍ଟ ଦୂର କରିବା ତାଙ୍କର କର୍ତ୍ତବ୍ୟ । ସେଥିପ୍ରତି ଇଚ୍ଛା ଥିଲେ ମଧ୍ୟ କିଛି କରିପାରୁ ନଥିବାରୁ ସେ ଅସହାୟ ବୋଧ କରୁଥିଲେ । ବଣରେ ଦନ୍ତାହାଣ୍ଡି କି ମଣିଷଖିଆ ବାଘ ମାରିଲେ ସେ ବନ୍ଧୁକ ଧରି ସିଧା ଚାଲି ଯାଉଥିଲେ । ହିଂସ୍ର ଜନ୍ତୁ-ମାନଙ୍କୁ ମୁହାଁଇବାକୁ । ଅଥଚ ଗୋଟିଏ ମୁଣ୍ଡୁକିଆ ଫରେଷ୍ଟ ଗାର୍ଡ କି ଚପରାସି ଗାଁକୁ ଆସିବା ଶୁଣିଲେ ତାଙ୍କ ଦେହରୁ ସମସ୍ତ ପରାକ୍ରମ କୁଆଡେ ଉଭେଇ ଯାଉଥିଲା । ତାଙ୍କୁ ମଧ୍ୟ ବାପାଙ୍କ ପରି ରଜାର କାମ ପାଇଁ ଗାଁରୁ ବେଠିଆ ପଠାଇବାକୁ ପଡୁଥିଲା । ତାଙ୍କ ଗାଁରେ ତାଙ୍କ ସାମନାରେ ପୋଲିସ୍ କିମ୍ବା ଚପରାସି ଲୋକଙ୍କୁ ବିନା କାରଣରେ ମାଡ଼ ଦିଆଉଥିଲେ । ସେଥିରେ ଆପତ୍ତି କରିବା ପରମ୍ପରା ବିରୋଧୀ ଭାବେ ଗଣିତ ହେବ ।

ଏହି ମାନସିକ ଦ୍ୱନ୍ଦ୍ୱରୁ ମୁକ୍ତି ପାଇବାର ବାଟ ନଥିଲା । ଅତ୍ୟାଚାର ସୀମାଟପି ହୋଇଗଲେ ସେ ବନସିଂ, ମୋତିରାମ ସିଂ ମାଡକାମୀ ଅଥବା ଗୋବିନ୍ଦ ପୂଜାରୀ ପରି ଅନ୍ତରଙ୍ଗ ବନ୍ଧୁଙ୍କ ସହିତ ଏହି ସମ୍ପର୍କ ଧରି ଆଲୋଚନା କରନ୍ତି । ନାନାପ୍ରକାର ପ୍ରସ୍ତାବ ମୁଣ୍ଡରେ ଗଜୁରି ଉଠେ । କିନ୍ତୁ ପରମୁହୂର୍ତ୍ତରେ ପ୍ରାଞ୍ଜଳ ଭାବେ ସେଗୁଡ଼ିକୁ ଚିନ୍ତାକରି ଦେଖିଲାବେଳକୁ ପ୍ରତ୍ୟେକଟି ପ୍ରସ୍ତାବ ଫମ୍ପା ଫାଟିଯାଏ । ଛାତିରେ ଦୁଃଖ ଭରିଯାଏ କିନ୍ତୁ ଆଶା ମଉଳେ ନାହିଁ ।

ମହା ପରାକ୍ରମଶାଳୀ ବ୍ରିଟିଶ୍ ଶାସନ ଓ ତାର ଆଜ୍ଞାବହ ରଜା ମହାରଜାଙ୍କ ଦର୍ପକୁ ଚୂର୍ଣ୍ଣ କରିବାପାଇଁ ଏଇ କେତୋଟି ଲୋକଙ୍କର ଉତ୍ତେଜନା ଗୁପ୍ତେଶ୍ୱରର ଘୋର ଜଙ୍ଗଲ ଭିତରେ ଝିଙ୍କ ପକ୍ଷୀଟାଏ ପରି କୁଆଡେ଼ ଉଭେଇଯାଏ ।



## ସାତ

ଏ ଶତାବ୍ଦୀର ପ୍ରଥମ ଭାଗରେ ମହାତ୍ମାଗାନ୍ଧୀ ତ୍ୟାଗ ଓ ଅହିଂସର ଯେଉଁ ପରାକାଷ୍ଠା ଦେଖାଇ ଦେଇଗଲେ ତାର ଏପରି ପ୍ରଭାବ ଲୋକଙ୍କ ଉପରେ ପଡିଲା ଯେ ସହସ୍ରାଧିକ, ଲୋକେ ଶିକ୍ଷିତ ଓ ଅଶିକ୍ଷିତ ଉଭୟେ, ସର୍ବସ୍ବ ତ୍ୟାଗକରି ସ୍ବାଧୀନତା ସଂଗ୍ରାମରେ ଝାସ ଦେଲେ । ସାରା ଭାରତରେ ସ୍ବାଧୀନତା ସଂଗ୍ରାମର ଦୁନ୍ଦୁଭି ବାଜି ଉଠିଲା କଂଗ୍ରେସ ଅନୁଷ୍ଠାନ ଜରିଆରେ ।

ଚିରବନ ଘେରା କୋରାପୁଟ ଜିଲ୍ଲା ମଧ୍ୟ ଏହି ମହାଭାରତଖାପ୍ସ ସମରରେ ନିଜକୁ ଭସାଇ ଦେଇଥିଲା । କୋରାପୁଟରେ କଂଗ୍ରେସ କାର୍ଯ୍ୟକ୍ରମ ପ୍ରବେଶ କରିଥିଲା ଚରଖା ଜରିଆରେ । ତତ୍କାଳୀନ ଉତ୍କଳ ପ୍ରଦେଶ କଂଗ୍ରେସ ସଭାପତି ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ କୋରାପୁଟକୁ କେତେକ କଂଗ୍ରେସ କର୍ମୀଙ୍କୁ ପଠାଇଲେ ଖଦଡର ପ୍ରସାର ପାଇଁ । ଏହା ମହାତ୍ମା ଗାନ୍ଧୀଙ୍କର ଏକ ପ୍ରିୟ କାର୍ଯ୍ୟ କାରଣ ଖଦି ଦ୍ବାରା ହିଁ ଭାରତବାସୀ ସ୍ବାବଲମ୍ବନଶୀଳ ହୋଇପାରିବେ । ତା ପାଇଁ ଆଉ ଇଂଲଣ୍ଡକୁ ଗୃହିଁ ବସିବେ ନାହିଁ । କର୍ମୀମାନେ କୋରାପୁଟର ବିଭିନ୍ନ ସ୍ଥାନରେ କପାଚାଷ, ଚରଖାରେ ସୂତାକଟା, ଲୁଗାବୁଣା ଆଦି ଶିଖାଉଥିଲେ । ଜୟପୁରରେ ଖଦି ବିକ୍ରି ପାଇଁ ଦୋକାନ ବି ଖୋଲିଲା ।

ଲବଣ ସତ୍ୟାଗ୍ରହ ସମୟରେ କେତେ ଜଣ ଯୁବକ ସରକାରୀ ଚାକିରିରୁ ଇସ୍ତଫା ଦେଇ ସ୍ବାଧୀନତା ସଂଗ୍ରାମରେ ଝାସ ଦେଲେ । ସେମାନଙ୍କ ଭିତରେ ଅଗ୍ରଣୀ ହେଉଛନ୍ତି ଜୟପୁରର ଶ୍ରୀ ରାଧାକୃଷ୍ଣ ବିଶ୍ବାସରାୟ । ଏମାନଙ୍କୁ ପ୍ରଥମରୁ ହିଁ ଜେଲଦଣ୍ଡ ଭୋଗିବାକୁ ପଡିଥିଲା । ୧୯୩୧ରେ

ଗାନ୍ଧୀ ଇର୍ୱିନ୍ ଚୁକ୍ତି ଫଳରେ ଏମାନେ ଛୁଟି ପାଇଲେ । ତା ପରେ ବିଭିନ୍ନ କମିଟି ଜରିଆରେ କଂଗ୍ରେସ କାମ ଆରମ୍ଭ ହେଲା । ଗାଁକୁ ଗାଁ ପାଦରେ ବୁଲି ବୁଲି ଗାନ୍ଧୀଜୀଙ୍କ ବାଣୀ ପ୍ରଚାର କରଗଲା । କଂଗ୍ରେସର କାର୍ଯ୍ୟକ୍ରମ ଓ ମହାତ୍ମା ଗାନ୍ଧୀଙ୍କ କଥା ଲୋକପ୍ରିୟ ହେବାରେ ଲାଗିଲା ।

ଏହି ସମୟରେ ୧୯୩୬ ସାଲରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ଓଡ଼ିଶାର ପ୍ରଥମ ଲାଟ ହେଲେ ସାର୍ ଜନ୍ ହବାକ୍ । କୋରାପୁଟ ତାଙ୍କ ହାତରେ ହସ୍ତମୁଦ ମାହାଲ୍ ଭାବେ ରହିଲା । ତଦନୁଯାୟୀ କୋରାପୁଟ ପାଇଁ ସେ ବିଶେଷ କ୍ଷମତାମାନ ପ୍ରୟୋଗ କରିପାରିବେ ।

ଅଳ୍ପଦିନ ପରେ ହବାକ୍ ସାହେବ କୋରାପୁଟ ଗସ୍ତରେ ଆସିବା ଶୁଣାଗଲା । ପଟୁଆର, ଶିକାର ଆଦି ନାନା ଆଡ଼ମ୍ବରର କାର୍ଯ୍ୟକ୍ରମ ପ୍ରସ୍ତୁତ ହେଲା । ରାଜା, ରାଜ କର୍ମଚାରୀ, ସରକାରୀ ହାକିମ ସମସ୍ତେ ବ୍ୟସ୍ତ ହୋଇ ଉଠିଲେ । ଜିଲ୍ଲାର ଅଧ କଧ ସବୁ ଆଡ଼ରୁ ପାଇକ, ଚପରାସି, ହାକିମମାନେ ଗାଁ ଗାଁ ବୁଲି ବେଠିଆ, ଭରିଆ, ପକାପକିବା, ଛେଳି, କୁକୁଡ଼ା, ଅଣ୍ଡା, ସରୁ ଚାଉଳ, ଡାଲି, କାଠ, ହାଣ୍ଡି ଆଦି ସକଳ ସାମଗ୍ରୀ ଯୋଗାଡ଼ କରିବାରେ ଲାଗିଲେ । ସାହେବ ବାଘ ଶିକାର କରିବେ । ସେଥିଲାଗି ବାଘ ଖାଇବା ସକାଶେ ବାଛୁରି ବାଛୁରି ସୁନ୍ଦର ଗାଈଗୋରୁମାନ ଅଣାହେଲା । ସମସ୍ତଙ୍କ ସକାଶେ ଦୁଧ ଦରକାର । ଅତଏବ ଦୁହାଁଳିଆ ଗାଈ, ମଇଁଷି ଆଦି ଶହ ଶହ ସଂଖ୍ୟାରେ ଜୟପୁରକୁ ଅଣାଗଲା ।

ଶିକାରରେ ବାଘ, ବାରହା, ସମ୍ବର ଆଦି ଜନ୍ତୁଙ୍କୁ ବାଇଦ ବଜାଇ ଖେଦି ଆଣିବା ସକାଶେ ଶହ ଶହ ଲୋକ ଦରକାର । ଏ ସମସ୍ତଙ୍କୁ ପୁଣି ଖାଇବାକୁ ଦେବ କିଏ ? ଗାଁ ଗାଁକେ ଜୁଲୁମ, ଅତ୍ୟାଚାର କରି ଖାଦ୍ୟପେୟର ଯୋଗାଡ଼ କରଗଲା ।

ଶିକାରର ବନ୍ଦୋବସ୍ତ ହୋଇଥାଏ ବମର୍ଗିର ଗୁପ୍ତେଶ୍ୱର ଜଙ୍ଗଲରେ । ଲକ୍ଷ୍ମଣ ନାୟକଙ୍କ ଇଲାକା । ତାଙ୍କ ଉପରେ ବହୁତ ଚାପ ପଡ଼ିଲା । ସେ ବିବ୍ରତ ହୋଇପଡିଲେ ।

ଲାଟ ସାହେବ ଆସିଲେ ହସି ଖୁସି ହୋଇ ଚାଲିଗଲେ । ଖାନାପିନାର ଧୂମ୍ ଛୁଟିଲା । ଏକ ପ୍ରକାର ହରିଲୁଟ୍ ଅବସ୍ଥା । ଏଣେ ଗାଁ ଗାଁରେ ହାହାକାର ପଡ଼ିଗଲା । କାହାର ଗାଈଗୋରୁ ଗଲା ତ କାହାର ଛେଳି, ମେଣ୍ଢା, କୁକୁଡ଼ା ଇତ୍ୟାଦି । ଗାଁଗୁଡ଼ିକ ହତଶ୍ରୀ ହୋଇଗଲା ।

ଲକ୍ଷ୍ମଣ ନାୟକଙ୍କ ମାନସିକ ବିବ୍ରତା ଚରମ ସୀମାରେ ପହଞ୍ଚିଲା । କଣ କରିବେ କିଛି ଉପାୟ ଦିଶିଲା ନାହିଁ । ଲୋକେ ଯାହା ରଖିଥିଲେ ସବୁ ଗଲା । ଲକ୍ଷ୍ମଣ ଏବେ କାହାକୁ କଣ କହିବେ ? ଯେଉଁ ରାଜାଙ୍କୁ ସେ ଗୁହାରି କରିଥାନ୍ତେ ସେ ତ ନିଜେ ଲୁଟି ନେଇଛନ୍ତି । ଏଠାରେ ରକ୍ଷକ ହିଁ ନିଜେ ଭକ୍ଷକ ।

ଲକ୍ଷ୍ମଣ ବ୍ୟସ୍ତ ହୋଇ ଜୟପୁରର ସ୍ୱଦେଶପ୍ରେମୀ ବନ୍ଧୁ ଶ୍ରୀ ନୀଳକଣ୍ଠ ପାଢ଼ୀଙ୍କୁ ରାମଗିରି ଅଞ୍ଚଳର ଦୁର୍ଦ୍ଦଶା ବଖାଣିଲେ । ଦୁଃଖ ଦୁର୍ଦ୍ଦଶାର ଠିକଣାଥିଲା ନାହିଁ । ସକାଳରୁ ସଞ୍ଜଯାଏ ଆଲୋଚନା ଚାଲିଲା । ଏ ପରିସ୍ଥିତିରେ କଣ କରିବାକୁ ହେବ ଉପାୟ ବତାଇବାକୁ ଅନୁରୋଧ କରି ଲକ୍ଷ୍ମଣ ଫେରି ଆସିଲେ ତେନ୍ତୁଳିଗୁମ୍ମାକୁ ।

ଲକ୍ଷ୍ମଣଙ୍କ ବର୍ଣ୍ଣନାରେ ନୀଳକଣ୍ଠ ପାଢ଼ୀ ମଧ୍ୟ ବିଚଳିତ ହୋଇ ପଡ଼ିଲେ । ସେଇ ରାତିରେ ସେ ଚାଲିଲେ ଜୟପୁରକୁ । ସେତେବେଳେ ଜିଲ୍ଲା କଂଗ୍ରେସ ମୁଖ୍ୟ ଶ୍ରୀ ବିଶ୍ୱାସରାୟଙ୍କ ପାଖରେ ମଧ୍ୟ ଏହି ଆଲୋଚନା ପଡ଼ିଥାଏ । ଅତ୍ୟାଚାରର ବିବରଣୀ ଲିପିବଦ୍ଧ କରି ପଠାଗଲା 'ସମାଜ' ପତ୍ରିକାକୁ । 'ସମାଜ'ରେ ସମ୍ବାଦଟି ପ୍ରକାଶ ପାଇଲା ପରେ ପ୍ରଦେଶ ସାରା ଚହଳ ପଡ଼ିଗଲା । ଜନସାଧାରଣ ଭିତରେ ଆଲୋଡ଼ନ ସୃଷ୍ଟି ହେଲା । ଲାଟ ସାହେବଙ୍କ ସମ୍ମାନ ଉପରେ ଆଞ୍ଚ ଆସିଲା । ତାଙ୍କରି ନିର୍ଦ୍ଦେଶକ୍ରମେ ଘଟଣାର ତଦନ୍ତ ହେଲା ଏବଂ ସତ୍ୟ ପ୍ରମାଣିତ ହେଲା । ସରକାରଙ୍କ ଆଦେଶ ଅନୁଯାୟୀ ଯାହାର ନଷ୍ଟ ହୋଇଥିଲା, ତଦନୁଯାୟୀ ସେ କ୍ଷତିପୂରଣ ପାଇଲା ।

ଲକ୍ଷ୍ମଣ ନାୟକଙ୍କ ଜୀବନରେ ଏହା ଏକ ବିଶିଷ୍ଟ ଘଟଣା । ଯେଉଁ ଉପାୟ ବଳରେ ସରକାର ଲୋକଙ୍କ ଗୁହାରି ଶୁଣିଲେ, ଲୋକଙ୍କ

ପାଟରେ ମୁଣ୍ଡ ନୁଆଁଇଲେ ତାହା ସେ ଆଗରୁ କରିଥିବା ଧାରଣାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏଥିପାଇଁ ସଶସ୍ତ୍ର ବିପ୍ଳବ ଦରକାର ପଡ଼ିଲା ନାହିଁ । ଦରକାର ପଡ଼ିଲା ସତ୍ୟ ଉପରେ ପ୍ରତିଷ୍ଠିତ ଏକ ସମ୍ମିଳିତ ସ୍ୱର । ସମ୍ମିଳିତ ଦାବୀ ଏବଂ ଏକତାର ବଳ ଉପରେ ସେ ସମ୍ୟକ୍ ଆଶ୍ୱାସ ପାଇଲେ ଏହି ଘଟଣାରେ ।

ଏତଦ୍ଵାରା ଗୋଟିଏ ବ୍ୟକ୍ତି ଓ ଗୋଟିଏ ଅନୁଷ୍ଠାନ ଉପରେ ତାଙ୍କର ଭରସା ବିଶେଷ ବଢ଼ିଗଲା । ବ୍ୟକ୍ତିଟି ହେଉଛନ୍ତି ଶ୍ରୀ ନୀଳକଣ୍ଠ ପାତ୍ର ଏବଂ ଅନୁଷ୍ଠାନଟି ହେଉଛି କଂଗ୍ରେସ ।

ଉପରୋକ୍ତ ଘଟଣାରେ କଂଗ୍ରେସ ଅନୁଷ୍ଠାନ ବେଶ୍ ଲୋକପ୍ରିୟତା ଅର୍ଜନ କରିପାରିଥିଲା । କଂଗ୍ରେସ ନେତା ଓ କର୍ମୀମାନେ ବିଶେଷ ଆଗ୍ରହ ଓ ତତ୍ପରତାର ସହିତ ଗ୍ରାମେ ଗ୍ରାମେ କଂଗ୍ରେସ ବାଣୀ ପ୍ରଚାର କରିବାରେ ଲାଗିଲେ । ଗ୍ରାମାଞ୍ଚଳରେ ବାସ କରୁଥିବା ଆଦିବାସୀ ଓ ହରିଜନମାନେ ମଧ୍ୟ ସଦ୍ୟ ଉପକୃତ ହୋଇଥିବାରୁ କଂଗ୍ରେସ କଥା ଶୁଣିଲେ । କର୍ମୀମାନଙ୍କୁ ଆଦର କଲେ ।

ସେତେବେଳେ କୋରାପୁଟର ଅନ୍ୟତମ କଂଗ୍ରେସ ନେତା ଶ୍ରୀ ରାଧାମୋହନ ସାହୁ ମାଲକାନଗିରି ଅଞ୍ଚଳର କଂଗ୍ରେସ ଦାୟିତ୍ୱ ବୁଝୁଥାନ୍ତି । ସେ ଅଞ୍ଚଳର ବରିଷ୍ଠ କଂଗ୍ରେସ କର୍ମୀ ହେଉଛନ୍ତି ଝୁମରର ନୀଳକଣ୍ଠ ପାତ୍ର । ବେଶ୍ ଲୋକପ୍ରିୟ ନେତା । ତାଙ୍କ ଘରକୁ ପ୍ରତିଦିନ ମୋଟୁଠାରୁ ଆରମ୍ଭ କରି ବୈପାରିଗୁଡ଼ା ପର୍ଯ୍ୟନ୍ତ ଅନେକ ଗାଁର ଲୋକ ଆସନ୍ତି ।

କଂଗ୍ରେସ ପ୍ରଚାର କାର୍ଯ୍ୟ ପାଇଁ ଝୁମରରେ ନୀଳକଣ୍ଠ ପାତ୍ରଙ୍କ ଘରେ ଥରେ ଗୋଟିଏ ସଭା ଆହୂତ ହେଲା । ସେଇ ସଭାରେ ଶ୍ରୀ ରାଧାମୋହନ ସାହୁ ଉପସ୍ଥିତ ଥିଲେ । ସଭାକୁ ନିମନ୍ତ୍ରିତ ହୋଇ ଆସିଲେ ସମଗ୍ର ମାଲକାନଗିରି ଅଞ୍ଚଳର ବରିଷ୍ଠ ନାୟକ ଓ ମୁସ୍ତାଦାରମାନେ । ଲକ୍ଷ୍ମଣ ନାୟକ ମଧ୍ୟ ସେଦିନ ପ୍ରଥମ କରି ନିମନ୍ତ୍ରିତ ହୋଇ ଆସିଥିଲେ ।

ସେଇ ସଭାରେ ଲକ୍ଷ୍ମଣ କ୍ରମେ ବୁଝାଇ ଦିଆଗଲା କି ଘରେ କ୍ଷେତ୍ରର ଚଣିଲା ପରି ଭାରତ ଭୂଇଁରେ ଗୋରା ସାହେବମାନେ ପଶି ରାଜୁତି

କରୁଛନ୍ତି । ଆମ ଦେଶର ଧନ ଦରବ ସେ ଦେଶକୁ ବୋହି ନେଇ ଆମକୁ ଗୋଲାମ ପରି ଖଟାଉଛନ୍ତି । ଅନ୍ୟାୟ ଖାଜଣାମାନ ଆଦାୟ କରୁଛନ୍ତି । ଆମେ ଭାବୁଛୁ ଯେ ତାଙ୍କ କଥା ମାନନେବା ଆମର କର୍ତ୍ତବ୍ୟ । କିନ୍ତୁ ତାହା ଠିକ୍ ନୁହେଁ । ସେମାନେ ଆମକୁ ଜୁଲୁମ୍ କରୁଛନ୍ତି । ତାଙ୍କର କଥା ମାନି ଚାଲିବାରୁ, ପ୍ରତିବାଦ ନ କରିବାରୁ ତାଙ୍କ ବଳ ବହପ ବଢ଼ିଯାଉଛି । ତାର ଅବସାନ ପାଇଁ ସରକାର ସହିତ ଆମେ ଅସହଯୋଗ କରିବା । ସେଥିପାଇଁ ପ୍ରଥମେ ଲୋଡ଼ା ଆମ ଭିତରେ ଏକତା । ଆମେ ସମସ୍ତେ ଭାରତବାସୀ ଏକାଠି ହୋଇ ସାଇବ କଥା ନ ଶୁଣିଲେ, ସେମାନେ ଏ ଦେଶ ଛାଡ଼ି ପଳାଇବାକୁ ବାଧ ହେବେ । ସେଇ ଏକତା ଆଣିବା ପାଇଁ ଆମକୁ ପ୍ରଥମେ କଂଗ୍ରେସରେ ଯୋଗ ଦେବାକୁ ପଡ଼ିବ । ମହାତ୍ମାଗାନ୍ଧୀ ଆମର ନେତା । ସେ ଯାହା କହିବେ ଆମେ ତାହା କରିବା । ସେ କହିଛନ୍ତି ଆମେ ଅନ୍ୟାୟକୁ ବିରୋଧ କରିବା । ତା ପାଇଁ ଆମକୁ ଯିଏ ବାଡ଼େଇଲେ ବାଡ଼ାଉ ଆମେ କିନ୍ତୁ ହାତ ଉଠାଇବା ନାହିଁ ।

ଲକ୍ଷ୍ମଣ ନାୟକଙ୍କୁ ଏ କଥାଗୁଡ଼ିକ ବେଶ୍ ମନକୁ ପାଇଲା । ବହୁଦିନରୁ ସେ ଯେଉଁ ସମସ୍ୟାଗୁଡ଼ିକ ଭିତରେ ଘାଣ୍ଟି ହେଉଥିଲେ, ଚତୁର୍ଦ୍ଦିଗ ଅନ୍ଧାର ଦିଶୁଥିଲା ଏବେ ତାର ଅବସାନ ପାଇଁ ଗୋଟିଏ ରାସ୍ତା ପାଇଲେ । ପିଲାଦିନରୁ ଆଜଯାଏଁ ଯେଉଁ ବେଠି ବଗାରି ଓ ସରକାରଙ୍କ ନାନା ଅତ୍ୟାଚାରରେ ସେ ମର୍ମାହତ ହୋଇଥିଲେ ତାର ସମାପ୍ତି ପାଇଁ ଏହାହିଁ ଉପଯୁକ୍ତ ବାଟ ।

ଗ୍ରାମରେ ଉପସ୍ଥିତ ଥିବା ସମସ୍ତ ବ୍ୟକ୍ତି ସେ ଦିନ କଂଗ୍ରେସର ଦଳଭୁକ୍ତ ହେଲେ । କଂଗ୍ରେସ ଆଦର୍ଶରେ ଅନୁପ୍ରାଣିତ ହେବା ପାଇଁ ଶପଥ ଗ୍ରହଣ କଲେ । ଲକ୍ଷ୍ମଣ ନାୟକଙ୍କୁ ମଧ୍ୟ ଗୋଟିଏ ଚାରିଅଣିଆ ସଭ୍ୟ କରାଗଲା ।

ସେ ଦିନ ଲକ୍ଷ୍ମଣ ନାୟକ ପ୍ରଥମ ଥର ପାଇଁ ସମସ୍ତଙ୍କ ସହିତ ରାମଧୁନ୍ ଗାଇଲେ, ଖଦଡ଼ ପିନ୍ଧିଲେ ଏବଂ ନୂତନ ରୋମାଞ୍ଚରେ ସେ ପୁଲକିତ ହେଲେ ।



# ଆଠ

ସେତେବେଳେ କଂଗ୍ରେସ କେବଳ ଗୋଟିଏ ରାଜନୈତିକ ଦଳ ଭିତରେ ସୀମାବଦ୍ଧ ନଥିଲା । କଂଗ୍ରେସ ଥିଲା ସ୍ୱାଧୀନତା ସଂଗ୍ରାମ ପାଇଁ ଏକମାତ୍ର ସର୍ବଭାରତୀୟ ଅନୁଷ୍ଠାନ । କଂଗ୍ରେସ ଥିଲା ଜନତାର । ତା ପୂର୍ବରୁ କେହି ଦଳିତ ଜନତାର ଉନ୍ନତି ପାଇଁ ଆଭିମୁଖ୍ୟ ଗ୍ରହଣ କରି ଶାସକ ବିରୁଦ୍ଧରେ ସ୍ୱାଧୀନତା ପାଇଁ ଲଢ଼ିବା ଇତିହାସରେ ଦେଖା ନଥିଲା । ଦରିଦ୍ର ଆଦିବାସୀ ଓ ହରିଜନମାନଙ୍କ ସାମାଜିକ ଓ ଅର୍ଥନୈତିକ ଅଭ୍ୟୁଦୟ ମହାତ୍ମା ଗାନ୍ଧୀଙ୍କର ଏକ ପ୍ରିୟ କାର୍ଯ୍ୟଥିଲା । ସେଥିପାଇଁ ଭାରତର ଗାଁ ଗଣ୍ଡାରେ ମହାତ୍ମା ଗାନ୍ଧୀଙ୍କ ସ୍ୱାଧୀନତା ଆନ୍ଦୋଳନ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା ।

କଂଗ୍ରେସ ନେତା ଓ କର୍ମୀମାନଙ୍କର ମଧ୍ୟ ଦାୟିତ୍ୱ ବହୁଗୁଣରେ ବଢ଼ି ଯାଇଥିଲା । ଗାଁ ଗାଁରେ କଂଗ୍ରେସ କର୍ମୀ ଦରକାର ପଡ଼ିଲେ କଂଗ୍ରେସର କାର୍ଯ୍ୟକ୍ରମ ପ୍ରଚାର ଓ କାର୍ଯ୍ୟକାରୀ କରିବା ପାଇଁ । ସେଥିପାଇଁ ୧୯୩୭-୩୮ ସାଲରେ ଶ୍ରୀଯୁକ୍ତ ରାଧାକୃଷ୍ଣ ବିଶ୍ୱାସରାୟ ଜୟପୁର ନିକଟସ୍ଥ ନୂଆପୁଟଠାରେ ଏକ ତାଲିମ କେନ୍ଦ୍ର ଖୋଲିଲେ । ସମଗ୍ର ଜିଲ୍ଲାରୁ ପ୍ରାୟ ସ୍ତରଶହ ଜଣ କର୍ମୀ ନୂଆପୁଟରେ ତାଲିମ ପାଇଥିଲେ ।

ଲକ୍ଷ୍ମଣ ନାୟକ ମଧ୍ୟ ଏହି ତାଲିମ ଶିବିରରେ ଯୋଗ ଦେଇଥିଲେ । ନୂଆପୁଟ ତାଲିମ ଏକ ଆଦର୍ଶ ସ୍ଥାନୀୟ ଟ୍ରେନିଂ ବୋଲି ବିଦିତ ଅଛି ।

ସୁଦୂର କୋରାପୁଟର ଏକ ଅନାମଧେୟ ଅଞ୍ଚଳରେ ତାଲିମ କାର୍ଯ୍ୟ ଚାଲିଥିଲେ ମଧ୍ୟ ଓଡ଼ିଶା ତୁଙ୍ଗ ନେତାମାନେ ଏଠାକୁ ଆସିଥିଲେ ବିଦ୍ୟାର୍ଥୀମାନଙ୍କୁ ନାନା ବିଷୟରେ ଧାରଣା ଦେବାପାଇଁ । କର୍ମୀ-ମାନଙ୍କର ଶାରୀରିକ ଓ ମାନସିକ ଶକ୍ତି ଅଭିବୃଦ୍ଧି ପାଇଁ ଅନେକ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଥିଲା ।

ନୈଶ ବିଦ୍ୟାଳୟ ଦ୍ୱାରା ଅକ୍ଷର ଶିକ୍ଷା ଓ ପାଠପଢ଼ା ଚାଲିଥିଲା । ଶାରୀରିକ ଚର୍ଚ୍ଚା ହିନ୍ଦୁସ୍ଥାନ ସେବାଦଳ ଟ୍ରେନିଂ ଅନୁଯାୟୀ କରା-ଯାଉଥିଲା । ଯୁବକ ଓ ପ୍ରୌଢ଼ମାନେ ଏହି ଟ୍ରେନିଂରେ ଯୋଗ ଦେଇଥିଲେ ଏବଂ ସେମାନେ କଠୋର ଶୃଙ୍ଖଳା ପାଳନ କରୁଥିଲେ ।

ସମସ୍ତେ ଏକପ୍ରକାର ପିନ୍ଧନ୍ତି । ଖଦଡ଼ ପରିଧାନ । ଖାଦ୍ୟ ସାଦାସିଧା । ନିରାମିଷ । ଏକାଠି ବସି ଭୋଜନ କରନ୍ତି । ଛୁଆଁ ଅଛୁଆଁର ପ୍ରଶ୍ନ ନାହିଁ ।

ଭୋର ସକାଳୁ ଉଠିବାକୁ ହୁଏ । ଖଦଡ଼ ହାଫ୍ ପ୍ୟାଣ୍ଟ ଓ ହାଫ୍ ସାର୍ଟ ପିନ୍ଧି ବ୍ୟାୟାମ, ଲାଠି ଚାଳନା ଓ ସମବେତ ଡ୍ରିଲ୍ ହୁଏ । ମାର୍ଚ୍ଚିଂ କରି କର୍ମୀମାନେ ଗାଁ ଗଣ୍ଡା ବୁଲନ୍ତି ଏବଂ ଗ୍ରାମ ସଫେଇ କରନ୍ତି । ଗ୍ରାମର ମଇଳାକୁ ନେଇ କମ୍ପୋଷ୍ଟ ଖତ ତିଆରି ହୁଏ । ନିଜର ସମସ୍ତ କାମ ନିଜେ ହିଁ କରିବାକୁ ହେବ । ସ୍ନାନାଦି ପରେ ସମବେତ ପ୍ରାର୍ଥନା ।

ରାତିରେ ଓ ଦିନବେଳେ କର୍ମୀମାନେ ଅକ୍ଷର ଶିକ୍ଷା କରନ୍ତି । ଉଦ୍ଦେଶ୍ୟ ହେଲା, ସେମାନେ ଆପଣା ଗାଁକୁ ଫେରିଗଲେ ଗ୍ରାମବାସୀଙ୍କୁ ଅନ୍ତତଃ ସାକ୍ଷର କରାଇବେ । ତାଲିମ୍ କାଳରେ କେତେକ ଅତ୍ୟାବଶ୍ୟକ ବିଷୟରେ ଶିକ୍ଷା ଦିଆଯାଉଥିଲା, ଯଥା—ଉନ୍ନତ ଧରଣର କୃଷି, ଗ୍ରାମବାସୀଙ୍କ ରୋଗ ବେମାର ବୁଝିବା ଓ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ନିୟମାବଳୀ ଅବଗତ ହେବା, ଭାରତ ରାଜନୀତିରେ ପ୍ରାଥମିକ ଜ୍ଞାନ ହାସଲ କରିବା ଇତ୍ୟାଦି । ଏହି ବିଷୟଗୁଡ଼ିକରେ ପ୍ରବୀଣ ଲୋକଙ୍କୁ ବକ୍ତୃତା ଦେବାପାଇଁ

ନିମନ୍ତ୍ରଣ କରାଯାଉଥିଲା । ଏହି କାର୍ଯ୍ୟକ୍ରମରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାଶ ସାହାଯ୍ୟ କରୁଥିଲେ । ସେ ଓଡ଼ିଶା ରାଜଧାନୀରୁ କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ତାଲିମ୍ କେନ୍ଦ୍ରକୁ ପଠାଉଥିଲେ । ସେମାନଙ୍କ ଭିତରୁ ଆଚାର୍ଯ୍ୟ ହରିହର ଦାଶ, ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଶ୍ରୀ ଗୋଦାବରୀଶ ମିଶ୍ର ଇତ୍ୟାଦି ଉଲ୍ଲେଖଯୋଗ୍ୟ । ସେମାନେ କର୍ମୀମାନଙ୍କ ମନରେ ସାମାଜିକ ଓ ରାଜନୈତିକ ଚେତନା ଆଣିବାରେ ସାହାଯ୍ୟ କରୁଥିଲେ ।

କର୍ମୀମାନଙ୍କୁ ସୂତାକଟା, ଲୁଗା ବୁଣା ଇତ୍ୟାଦିରେ ତାଲିମ୍ ଦିଆ ଯାଉଥିଲା । ତାର ସମସ୍ତ ଆନୁସଙ୍ଗିକ ତଥ୍ୟ ମଧ୍ୟ ଶିଖିବାକୁ ପଡୁଥିଲା, ଯଥା—କପାବୃକ୍ଷ, ଚରଖା ମରାମତି ଇତ୍ୟାଦି । ଭାରତବାସୀ ସ୍ୱାବଲମ୍ବନଶୀଳ ହେବେ, ପିନ୍ଧିବା ପାଇଁ ଅନ୍ତତଃ ବାହାର ଦେଶ ଉପରେ ନିର୍ଭର ନ କରିବେ ସେଥିପାଇଁ ସୂତାକଟାକୁ ବିଶେଷ ଗୁରୁତ୍ୱ ଦେଉଥିଲେ । କର୍ମୀମାନଙ୍କର ସ୍ଲୋଗାନ୍ ଥିଲା, 'କାଟି ପିନ୍ଧ କୁଟି ଖାଅ ।' 'ତକଲି ମୁନରୁ ସ୍ୱାଧୀନତା ଆସିବ ।' 'ଚରଖା ହେଉଛି ସୁଦର୍ଶନ ଚକ୍ର ।'

କର୍ମୀମାନଙ୍କ ମାନସିକ ଅଗ୍ରଗତି ଓ ଚରିତ୍ର ଗଠନ ଲାଗି ମହାତ୍ମା ଗାନ୍ଧୀଙ୍କ ଏକାଦଶ ବ୍ରତ ଉପରେ ଗୁରୁତ୍ୱ ଆରୋପ କରାଯାଉଥିଲା । ସେଇ ଏଗାରଟି ମତ ହେଲା—

୧ । ଅହିଂସା ପରମ ଧର୍ମ ।

୨ । ସତ୍ୟ ହିଁ ଭଗବାନ ।

୩ । ନିଶା ବର୍ଜନ କର ।

୪ । ବ୍ରହ୍ମଚର୍ଯ୍ୟ ଜ୍ଞାନ ଓ ବଳର ଉତ୍ସ ।

୫ । ଆବଶ୍ୟକତାଠାରୁ ବେଶୀ ସଂଗ୍ରହ କରି ମହଜୁଦ୍ ରଖିବା ଏକ ସାମାଜିକ ପାପ ।

୬ । ଯେ ଶାରୀରିକ ପରିଶ୍ରମ କରେ ନାହିଁ ସେ ବଞ୍ଚି ରହିବାକୁ ଅଯୋଗ୍ୟ ।

୭ । ପବିତ୍ରତା ମଣିଷର ଶ୍ରେଷ୍ଠ ଭୂଷଣ ।

୮ । ସବୁଠାରେ ଭୟ ବର୍ଜନ କର ।

୯ । ସ୍ୱଦେଶୀ ଜିନିଷ ହିଁ ବ୍ୟବହାର କର ।

୧୦ । ଇନ୍ଦ୍ରିୟ ଲିପ୍ସା ତ୍ୟାଗ କର ।

୧୧ । ମଣିଷ ସମାଜରେ ଛୁଆଁ ଜାତି ଅଛୁଆଁ ଜାତି ଭାବନା ପରିହାର କର ।

ଏହି ଏଗାରଟି ଉପଦେଶକୁ ନିଷ୍ଠା ସହକାରେ ପାଳନ କରିବାକୁ ହେବ । କର୍ମୀଙ୍କୁ ନିର୍ଦ୍ଦେଶ ଥିଲା ଯେ ନିଜେ ପ୍ରଥମେ ପାଳନ କରି ପରେ ଅନ୍ୟକୁ ଉପଦେଶ ଦେବ ।

କର୍ମୀମାନଙ୍କୁ ବୁଝାଇ ଦିଆଗଲା ଯେ କଂଗ୍ରେସ ଲୋକଙ୍କର ଅନୁଷ୍ଠାନ । ଲୋକଙ୍କର ଦାନରେ ହିଁ କଂଗ୍ରେସ କାର୍ଯ୍ୟ ଚାଲିବ । ସୁତରାଂ ଯେ କଂଗ୍ରେସରେ ଯୋଗ ଦେବ ସେ ପ୍ରଥମେ ଚାରିଅଣା (ଟଙ୍କାର ଏକ-ଚତୁର୍ଥାଂଶ) ଦେଇ ପ୍ରାଥମିକ ସଭ୍ୟ ହେବ ।

କୋରାପୁଟରେ ଦୁଇ ଦଫାରେ କର୍ମୀମାନେ ତାଲିମ୍ ପାଇଥିଲେ । ଏକ ବିଶେଷ ଅଧିବେଶନରେ ସେମାନଙ୍କୁ ପ୍ରମାଣପତ୍ର ମାନ ଦିଆଯାଇଥିଲା । କର୍ମୀମାନେ ତାଲିମ୍ ପାଇବା ପରେ ଜିଲ୍ଲା ତମାମ ଖେଳି ଯାଇଥିଲେ । କଂଗ୍ରେସ ବାଣୀ ଚାରିଆଡ଼େ ପ୍ରଚାରିତ ହେଲା । ଆଦିବାସୀ ବହୁ ଲୋକ କଂଗ୍ରେସରେ ଯୋଗ ଦେଲେ । ଫଳରେ ଗୋଟିଏ ବର୍ଷରେ ଚାରିଅଣିଆ ସଭ୍ୟଙ୍କଠାରୁ ପ୍ରାପ୍ୟ ଚାରି ହଜାର ଟଙ୍କା ଆଦାୟ ହୋଇଥିଲା । ସେଇ ପଇସାରେ ଚାରିଆଡ଼େ ପ୍ରାଥମିକ କଂଗ୍ରେସ ଅଫିସମାନ ଖୋଲିଲା ।

କୋରାପୁଟ ତାଲିମ୍ କାର୍ଯ୍ୟକ୍ରମଦ୍ୱାରା ସ୍ୱାଧୀନତା ସଂଗ୍ରାମ ପାଇଁ ଏକ ସୁଦୂରପ୍ରସାରୀ ଆନ୍ଦୋଳନର ରାଜପଥ ହୋଇଥିଲା । କୋରାପୁଟ ଏକ ବିଶାଳ ଜିଲ୍ଲା । ପ୍ରାୟ ସବୁ ଅଞ୍ଚଳ ଦୁର୍ଗମ । ଗୋଟିଏ ସ୍ଥାନର ଖବର ଆଉ ଏକ ସ୍ଥାନରେ ପହଞ୍ଚିବା ସହଜ ସାଧ୍ୟ ନୁହେଁ । କିନ୍ତୁ ଏହି

ତାଲିମ ପାଇଁ କୋରାପୁଟର ଅଧିକାଂଶରୁ କର୍ମୀମାନେ ଆସିଥିବାରୁ ସେମାନଙ୍କ ଭିତରେ ବନ୍ଧୁତା ଓ ଯୋଗସୂତ୍ର ସ୍ଥାପିତ ହୋଇଥିଲା । ଫଳରେ ଗାଁ ଗାଁ ଭିତରେ ବି ବନ୍ଧୁତା ବଢିଥିଲା । ପରବର୍ତ୍ତୀ କାଳରେ ଯେତେବେଳେ ସ୍ୱାଧୀନତା ସଂଗ୍ରାମ ଖୁବ୍ ତୀବ୍ର ହେଲା ସେତେବେଳେ ଗାଁ ଗାଁ ଭିତରେ ଖବର ପ୍ରଚାର ଏବଂ ଯେ କୌଣସି ଗୁପ୍ତ କାର୍ଯ୍ୟକ୍ରମର ପ୍ରସାର ଆପେ ଆପେ ବିଦ୍ୟୁତ୍ ବେଗରେ ଖେଳି ଯାଉଥିଲା ।

ଦ୍ୱିତୀୟତଃ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବାପାଇଁ କର୍ମୀଙ୍କ ହୃଦୟରେ ପୂର୍ବାପେକ୍ଷା ଆହୁରି ଅଧିକ ବଳ ଦେଖାଗଲା । ପ୍ରତ୍ୟେକେ ଅନୁଭବ କଲେ ଯେ ସେମାନେ ଏ ଦୁର୍ଗମପଥରେ ଏକାକୀ ନୁହନ୍ତି । ସମଗ୍ର ଭାରତବାସୀ ଯେପରି ଏକ ମହାସ୍ରୋତରେ ଗୋଟିଏ ଲକ୍ଷ୍ୟ ଆଡ଼କୁ ମୁହାଁ କରି ଆଗେଇ ଚାଲିଛନ୍ତି ।

ଲକ୍ଷ୍ମଣ ନାୟକ ଏହି ତାଲିମ୍‌ରେ ଅତ୍ୟନ୍ତ ଆଗ୍ରହାନ୍ୱିତ ଥିଲେ । ପ୍ରତ୍ୟେକଟି କାର୍ଯ୍ୟକ୍ରମ ସେ ଆନ୍ତରିକତାର ସହିତ ଶିକ୍ଷା କରୁଥିଲେ । ସେ ଅନେକ ନୂଆ କଥା ଶିଖିଲେ । ତାଙ୍କ ମନରେ ଯେଉଁ କୋଣଗୁଡ଼ିକ ଅନ୍ଧକାରାଚ୍ଛନ୍ନ ଥିଲା ସେ ସବୁ ଆଲୋକିତ ହେବାରେ ଲାଗିଲା । ଫଳରେ ଲକ୍ଷ୍ମଣ ନାୟକ ଏକ ନୂଆ ମଣିଷରେ ରୂପାନ୍ତରିତ ହେଲେ । ସେ ହୋଇଗଲେ ଗମ୍ଭୀର ଓ ସଂକଳ୍ପ ଗଠପର ବଦନ । ତାଙ୍କର ପୂର୍ବର ଚାଞ୍ଚଲ୍ୟ ଓ ହାସକୌତୁକ ଆଉ ବିଶେଷ ପରିଲକ୍ଷିତ ହେଲା ନାହିଁ । ହାନସାର କର୍ମବ୍ୟସ୍ତତା ଭିତରେ ଭାବପ୍ରବଣତାର ବି ସ୍ଥାନ ରହିଲା ନାହିଁ ।

ଲକ୍ଷ୍ମଣ ଟେଣ୍ଟୁଲିଗୁମ୍ମାକୁ ଆସି କଂଗ୍ରେସ କାର୍ଯ୍ୟରେ ହନଗତ ଖଟିଲେ । ଗାଁ ଗାଁ ବୁଲି ସ୍ୱାଧୀନତାର ବାଣୀ ପ୍ରଚାର କଲେ । ବୈପାରିଗୁଡ଼ାରୁ ମାଲକାନଗିରି ଯାଏ ଛୋଟ ବଡ଼ ଗ୍ରାମକୁ ଯାଇ ଲୋକଙ୍କୁ ମୁକ୍ତିର ବାର୍ତ୍ତା ବତାଇଲେ । ସେ ଓ ତାଙ୍କର ସହକର୍ମୀମାନେ ପ୍ରବଳ ଉତ୍ସାହରେ ଲୋକଙ୍କୁ ଆତ୍ମସଚେତନ କଲେ ।

ଫଳରେ ଗାଁ ଗାଁରେ ଖୋଲିଲା ଚରଖା, ନୈଶ ବିଦ୍ୟାଳୟ, ଗ୍ରାମ ସଫେଇ ଇତ୍ୟାଦି । ଦେଢ଼ ବର୍ଷ ଭିତରେ କେବଳ କୋରାପୁଟ ଜିଲ୍ଲାର କୋଣେ କୋଣେ ପ୍ରାୟ ଦୁଇ ହଜାର ଚରଖା ଖୋଲିଲା ଅନବରତ । ହାତ ବୁଣା ଲୁଗାମାନ ବିଭିନ୍ନ ସ୍ଥାନରେ ବିକ୍ରି ହେବାରେ ଲାଗିଲା । ସମସ୍ତେ ଖଦଡ଼ ପିନ୍ଧିଲେ । ମୋଟା ଓ ଶକ୍ତ ସ୍ୱଦେଶୀ ଲୁଗାର ଆଦର ବଢ଼ିଲା । ଚରଖା ଚଳାଇବାର ସୁଫଳ ପାଇବାକୁ ଲାଗିଲେ ଗ୍ରାମବାସୀମାନେ । ଜଣେ ଚରଖା ଚଳାଇ, ଲୁଗା ବୁଣି ମାସକୁ ସେ କାଳରେ ବେଶ୍ ଉପାର୍ଜନ କଲା । ଲାଭଜନକ ହେବାରୁ ଅନେକେ ଆପଣା ବାଡ଼ିରେ କପାଗଛ କଲେ । ଜୟପୁର ଖଦଡ଼ ବ୍ୟବସାୟର କେନ୍ଦ୍ର ହୋଇ ଉଠିଲା । ସମସ୍ତ ଗ୍ରାମ ଏହି ଖଦି ଓ ଚରଖା ଯୋଗୁଁ ଜୟପୁର ସହିତ ସର୍ବଦା ସମ୍ପର୍କରେ ଆସିଲେ ।

ଖଦଡ଼ ପ୍ରସାର ଛଡ଼ା ଲକ୍ଷ୍ମଣ ଅହିଂସାକୁ ଜୀବନର ବ୍ରତରୂପେ ପାଳିଲେ ଏବଂ ଅହିଂସାର ମହାମନ୍ତ୍ର ଘରଆଡ଼େ ପ୍ରଚାର କଲେ । ସେ ମଣିଷ କଣ ଜୀବଜନ୍ତୁମାନଙ୍କୁ ମଧ୍ୟ ହିଂସା କରିବା ଛାଡ଼ି ଦେଲେ । ଫଳରେ ତାଙ୍କର ଶିକାରୀ ଜୀବନର ଅବସାନ ହେଲା । ସେ ଆଉ ବନ୍ଧୁକ ଧରିଲେ ନାହିଁ । ଆପଣାର ଡ଼ିଶାରି କାମରେ କୁକୁଡ଼ା, ପାରା, ଛେଳି ଆଦି ବଳି ଦେବା-ପାଇଁ ଘୃଣା ପ୍ରକାଶ କଲେ । ତା ବଦଳରେ ଦେବଦେବୀଙ୍କୁ ପୂଜା ଦିଆଗଲା ଦୁଧ, କଦଳୀ, ଲିଆ, ମୁଆଁ ଇତ୍ୟାଦି । ଲକ୍ଷ୍ମଣଙ୍କ କଥାମାନି ଅନେକ ଗ୍ରାମରେ ଲୋକେ ଛେଳି, କୁକୁଡ଼ା ବଳି କରିଦେଲେ । କେତେ ଲୋକ ପ୍ରଲୋଭନରୁ ମୁକ୍ତି ପାଇବାକୁ ସେସବୁ ପୋଷିବା ବି ଛାଡ଼ି ଦେଲେ ।

ଆତ୍ମନିର୍ଭରଶୀଳତା ଛଡ଼ା ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରାଗଲା । ଲୋକଙ୍କୁ କର, ଖଜଣା ଇତ୍ୟାଦି ନ ଦେବାକୁ ପ୍ରବର୍ତ୍ତାଇବା ସରକାର ବିରୋଧୀ କାମ । ତେଣୁ ସରକାରୀ କର୍ମଚାରୀମାନେ ଜାଗ୍ରତ ଆଉ ହୋଇ ରହିଲେ ।

ଲକ୍ଷ୍ମଣ ନାୟକଙ୍କ ଜୀବନରେ ଏହା ଏକ ଦ୍ୱନ୍ଦ୍ୱାତ୍ମକ ସମୟ । ଏକେ ତ ସେ ରାଜାଧୀନ ନାୟକ, ହିସାବରେ ସେ ବାଇଶ ବାଟୁଆରେ

ଅର୍ଥାତ୍ ରାଜାଙ୍କ ବିରୁଦ୍ଧରେ ଲଢ଼ିବା ପାଇଁ ଏକ ଆଗୁଆ ସୈନିକ । ଏହି ବିପରୀତମୁଖୀ ଦ୍ୱୈତ ଭୂମିକା ଖୁବ୍ ବିପଦପୂର୍ଣ୍ଣ । ତଥାପି ସେ କେବେ ଧୈର୍ଯ୍ୟଚ୍ୟୁତ ହୋଇ ନଥିଲେ କି ବ୍ୟସ୍ତ ବି ହେଉ ନ ଥିଲେ । ଯାହା ଆପଦବିପଦ ଆସୁ, ତାକୁ ମୁହାଁଇବାକୁ ସେ ସଦା ପ୍ରସ୍ତୁତ ।

ସେ ସମୟରେ ତ ବ୍ରିଟିଶ୍ ସରକାର ବିରୁଦ୍ଧରେ ଟିକିଏ କହିଦେଲା ମାତ୍ରେ ପୋଲିସ୍ ବାନ୍ଧି ନେଇ ଜେଲ୍ ଭିତରେ ପୂରାଇ ଦେଉଥିଲେ । ତେଣୁ ଲକ୍ଷ୍ମଣ ନାୟକ ଜେଲ୍‌ରେ କପରି ଜୀବନ ନିର୍ବାହ କରିବାକୁ ପଡ଼େ ସେ ତଥ୍ୟ ସଂଗ୍ରହ କରି ତଦନୁଯାୟୀ ନିଜକୁ ପ୍ରସ୍ତୁତ କରିସାରିଥିଲେ ।



# ନଅ

ମହାତ୍ମା ଗାନ୍ଧୀଙ୍କ ଡ଼ାକରାରେ ଅନେକ ଛାତ୍ର ସ୍କୁଲ ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ଏହାର ପ୍ରଭାବ କୋରାପୁଟରେ ମଧ୍ୟ ପଡ଼ିଥିଲା । ଅନେକ ପିଲା ପଢ଼ା ଛାଡ଼ି କଂଗ୍ରେସ ଅଫିସରେ ପହଞ୍ଚନ୍ତି କିଛି ଦାୟିତ୍ୱ ବହନ କରିବା ଆଶାରେ । ୧୯୩୯ରେ ସେଇପରି ଜୟପୁର ହାଇସ୍କୁଲର ଷଷ୍ଠ ଶ୍ରେଣୀ ଛାତ୍ର ଶ୍ରୀ କୃଷ୍ଣଚନ୍ଦ୍ର ବଡ଼ୋଇ ପାଠପଢ଼ାକୁ ଜଳାଞ୍ଜଳି ଦେଇ କଂଗ୍ରେସ ସହିତ ଜଡ଼ିତ ହେଲେ ।

ପିଲାଟିର ଆନ୍ତରିକତା ଦେଖି ମାଲକାନଗିରି ଅଞ୍ଚଳକୁ ସାକ୍ଷର ଅଭିଯାନ ପାଇଁ ତାଙ୍କୁ ପଠାଗଲା । କୃଷ୍ଣଚନ୍ଦ୍ରଙ୍କୁ କୁହାଗଲା ଯେ ସେ ତୁରନ୍ତ ତେଲୁଗୁମ୍ମା ଯାଇ ମାତିଲି-ମାଲକାନଗିରି ପ୍ରାଥମିକ କଂଗ୍ରେସ ୟୁନିଟ୍‌ର ସଭାପତି ଲକ୍ଷ୍ମଣ ନାୟକଙ୍କୁ ଭେଟିବେ ଏବଂ ତାଙ୍କ ପରାମର୍ଶ ଅନୁଯାୟୀ କାମ କରିବେ ।

ସଙ୍ଗେ ସଙ୍ଗେ କୃଷ୍ଣଚନ୍ଦ୍ର ମାତିଲି ଚାଲିଗଲେ । ଛୋଟ ପିଲା । ଅଜଣା ଅଶୁଣା ଭୟଙ୍କର ଅରଣ୍ୟାନୀ ଭିତର ଦେଇ ଯିବାକୁ ପଡ଼ିଲା । ତଥାପି ତାଙ୍କର କୌଣସି ଅସୁବିଧା ହେଲା ନାହିଁ । ଯେଉଁ ଗାଁଗୁଡ଼ିକ ସେ ପାର ହେଲେ ସେଠା ଲୋକେ ଅନ୍ତଥି ପରାୟଣ, ଅଶିକ୍ଷିତ ହେଲେ ମଧ୍ୟ ହୃଦୟବାନ୍ । ବ୍ରିଟିଶ୍ ବିରୁଦ୍ଧରେ କହିବା ଏବଂ ସ୍ୱାଧୀନତା ବିଷୟରେ ପ୍ରଚାର କରିବା ସରକାରୀ ମତବିରୁଦ୍ଧ ଥିଲା । ତଥାପି କୃଷ୍ଣଚନ୍ଦ୍ର ଆବିଷ୍କାର କଲେ ଯେ ସମସ୍ତ ଗ୍ରାମରେ ଅବାଧରେ

କଂଗ୍ରେସ ବାର୍ତ୍ତାମାନ ପ୍ରଚାର ଚାଲିଛି । ଲୋକଙ୍କ ଭିତରେ ତା ଯେମିତି ଚର୍ଚ୍ଚା ଚାଲିଛି । ବୋଧହୁଏ ଏହି ଭୀଷଣ ଦୁର୍ଗମ ଅଞ୍ଚଳମାନ ପୋଲିସ୍‌ର ନଜର ଆଢ଼ୁଆଳରେ ରହିଯାଇଛି ।

ଗାଁରୁ ଗାଁକୁ ପାର ହେଲାବେଳେ ସେ ଅନେକ ତୁଣ୍ଡରୁ ଶୁଣିଲେ ଲକ୍ଷ୍ମଣଙ୍କ ନାମ । ହେଇ ସେ ଦିନ ଆସିଥିଲା ଲଖଣ ଏଇ ଗାଁକୁ । ସଭା କରିଥିଲା । ବେଗାର, ସବାର ରହିବ ନାହିଁ, ପାନୁ ଦିଅ ନାହିଁ ଆଉ କେତେ କ'ଣ କହିଲା । ସଙ୍ଗେ ସଙ୍ଗେ ଗାଁଟା ଯାକର ଲୋକ ଲଖଣର ଦଳଭୁକ୍ତ ହୋଇଗଲେ । ସବୁଠି ଏଇ ଏକା କଥା । କିଏ ସେଇ ଲକ୍ଷ୍ମଣ ନାୟକ ? କେବେ ସେ ଦେଖିବାକୁ ? କଣ ସେ କରେ ଯେ ସମସ୍ତେ ତା ପଛରେ ବାଇ ?

ପାଞ୍ଚ ଦିନର ପଥଶ୍ରାନ୍ତ ପରେ ଦିନେ ସକାଳେ କୃଷ୍ଣଚନ୍ଦ୍ର ପହଞ୍ଚିଲେ ଟେଣ୍ଟୁଳିଗୁମ୍ମାରେ । ତିନିଆଡ଼େ ପର୍ବତ । ଗାଁ ଭିତରେ ମଧ୍ୟ କୋଳାହଳ ନଦୀର ରଡ଼ି ଶୁଭୁଛି । ଖୋଜି ଖୋଜି ସେ ଲକ୍ଷ୍ମଣଙ୍କ ବସାରେ ପହଞ୍ଚିଲେ । ଦୁଇପଟ ଘର ମଝିରେ ଗୋଟିଏ ଖୁଣ୍ଟି ପଟିଆର ଖୋଲା ମଣ୍ଡପ । ତା ଉପରେ ଦଶବାର ଜଣ ବସି ଚରଖା ଚଳାଉଛନ୍ତି । ବାଟରେ କେତେ ଗ୍ରାମରେ ସେ କୌପିନୀ ପିନ୍ଧା ମଣିଷଙ୍କୁ ଦେଖିଛନ୍ତି । କିନ୍ତୁ ଏଠି ଏମାନେ ଆଣ୍ଠୁଲୁଚା ଓଦଡ଼ା ଲୁଗା ପିନ୍ଧିଛନ୍ତି ।

ପଚାରି ବୁଝିଲେ ଯେ ମଝିରେ ବସିଥିବା ବ୍ୟକ୍ତିଟି ହେଉଛନ୍ତି ଲକ୍ଷ୍ମଣ ନାୟକ

କୃଷ୍ଣଚନ୍ଦ୍ର ତାଙ୍କୁ ମୁଣ୍ଡ ନୁଆଁଇ ନମସ୍କାର କଲେ । ସଙ୍ଗେ ସଙ୍ଗେ ଲକ୍ଷ୍ମଣ ନାୟକ ଛିଡ଼ା ହୋଇପଡ଼ି ହସି ହସି କହିଲେ, "ତୁମେ କୃଷ୍ଣଚନ୍ଦ୍ର ବାବୁ କି ?"

କୃଷ୍ଣଚନ୍ଦ୍ର ଚମକି ପଡ଼ିଲେ । ଏ ଲୋକଟା କିପରି ଜାଣିଲା ତାଙ୍କ ନାମ ? ବଡ଼ ଆଚମ୍ବିତ କଥା । ପରମୂହୂର୍ତ୍ତରେ ସେ କହିଲେ, 'ଆଜ୍ଞା, ହଁ ।"

ଲକ୍ଷ୍ମଣ କୃଷ୍ଣଚନ୍ଦ୍ରଙ୍କ ହାତକୁ ଦୁଇ ମୁଠାରେ ଧରି ଚକାଇଲେ । ପାଖରେ ବସାଇ ପିଠି ଥାପୁଡ଼ାଇ କହିଲେ, "ମୁଁ ତୁମ ପାଇଁ ବଡ଼ ବ୍ୟସ୍ତ ହୋଇ ପଡ଼ିଥିଲି । ଦୁଇଦିନ ତଳେ ଜୟପୁର ଅଫିସରୁ ଖବର ଆସିଲା କି ଜଣେ ଇସ୍କୁଲ ପିଲାକୁ ପଠାଯାଇଛି ଗାଁ ଗଣ୍ଡାରେ ପାଠ ପଢ଼ାଇବାକୁ । ଦୁଇଦିନ ମୁଁ ଖାଲି ତୁମ କଥା ହିଁ ଭାବୁଥିଲି । ଛୋଟ ପିଲାଟାଏ ବଣପାହାଡ଼ ଡେଇଁ ଏ ବାଘ ଭାଲୁର ଦେଶକୁ କିପରି ଆସିବ ବୋଲି । ବାଟରେ କିଛି ଅସୁବିଧା ହେଲା କି ?"

—"ନାହିଁ ଅଜ୍ଞା ।"

ଜଣାଗଲା ଏଥର ଲକ୍ଷ୍ମଣ ସ୍ୱସ୍ତିରେ ନିଃଶ୍ୱାସ ମାରିଲେ । କିଛି ସମୟ ଉଭୟେ ତୁନି ରହିଲେ । ନବାଗତ ପିଲାଟିକୁ କ୍ଷଣେ ମାତ୍ର ଦୃଷ୍ଟି ପକାଇ ଅନ୍ୟମାନେ ଚରଖା ଚଲାଇବାରେ ଲାଗି ଗଲେଣି । କୃଷ୍ଣଚନ୍ଦ୍ରଙ୍କ ଦୃଷ୍ଟି ଲକ୍ଷ୍ମଣ ନାୟକଙ୍କ ଉପରେ ଲାଖିଗଲା । ଏଇ ତେବେ ସେଇ ଲଖଣ ନାଇକ ଯାହାକୁ ସାରା ମାଲ୍ଲିଲି ଥାନାର ଗଛପତ୍ର ମଧ୍ୟ ଚହ୍ନେ !

ଡେଙ୍ଗାଚୌଡ଼ା, ଛେଲୁପିଠା ମଣିଷଟାଏ । ଦେଖିବାକୁ ପଞ୍ଜାବୀ ମଣିଷ ଭଳି । ଉଚ୍ଚତା ଛ' ଫୁଟ ପାଖାପାଖି । ବଳି ହେଲାପରି ହାତଗୋଡ଼ । ଗୋଡ଼ ପେଣ୍ଡା ଫୁଲି ଉଠିଛି । ତମ୍ବାପରି ମାଟିଆ ରଙ୍ଗର ଦେହ । ଲମ୍ବାହାତ ଓ ମୋଟା ମୋଟା ଆଙ୍ଗୁଠି । ଗ୍ରେଚିଆ ବେକଟିଏ । ସତେ ଯେମିତି କବନ୍ଧ ଉପରେ ସିଧା ମୁଣ୍ଡଟି ଥୁଆ ହୋଇଛି । ମୁଣ୍ଡ ଓ କାନ୍ଧ ମିଶାମିଶି । ଓସାର ପାଟି । ଅଳ୍ପ ମୋଟା ଓଠ । ଫୁଲ୍‌କା ଫୁଲ୍‌କା ଗାଲ । ଡେଙ୍ଗା ଓ ସାମାନ୍ୟ ଚେପ୍‌ଟା ନାକ । ତା' ତଳେ ଅଳ୍ପ ଅଥଚ ଘଞ୍ଚ ନିଶ । ଅଳ୍ପ ପାଚି ଅସୁଛି । ମୁହଁ ତୁଳନାରେ ଖୁବ୍ ବେଶି ଲମ୍ବା କାନ । ଚକ୍ ଚକ୍ ଛୋଟ କପାଳ । ତା ତଳେ ଛୋଟ ମିଟିମିଟି ଆଖି ହଳଟି । ମୁଣ୍ଡରେ ପତଳା କହରା ବାଳ । ମୋଟାମୋଟି ପ୍ରଶସ୍ତ ମୁହଁ ।

କଥା କହିଲାବେଳେ ହସ ହସ । ଅନ୍ୟଥା ଗମ୍ଭୀର ।

ପିନ୍ଧିଛନ୍ତି ଅଣ୍ଟୁ ଲୁଗା ଧଳା ଖଦଡ଼ ଲୁଗା । ଦେହରେ ସେଇ ଖଦଡ଼ର ନାଲିଚ ଓ ବାଦାମୀ ରଙ୍ଗର ଜହର କୋଟ ।

ଅଳ୍ପ ସମୟର ଆଲାପ ପରେ ଲକ୍ଷ୍ମଣ ପଚାରିଲେ, "ଆମର ଏ ଆଡ଼ର ବଣ ପାହାଡ଼ ଦେଖି ଡ଼ର ଲାଗିଲା ନା ନାହିଁ ?"

କୃଷ୍ଣଚନ୍ଦ୍ର ଭାବିଲେ ଏ ଭୀଷଣ ଜଙ୍ଗଲ ଓ ପାହାଡ଼କୁ ଦେଖି କିଏ ବା ନ ଡ଼ରିବ ! ବଣରେ ତ ବାଘ ରହନ୍ତି ଶୁଣୁଛି । କିନ୍ତୁ ମଣିଷମାନେ ଏତେ ସାହସୀ ଓ ଭଲ ଯେ ଭୟ କୁଆଡ଼େ ଉଭେଇ ଯାଉଛି । ଥରମନ ହୋଇ ସେ କହିଲେ, ନା ଆଜ୍ଞା "ଭୟ ଲାଗିଲା ନାହିଁ ।"

ଏଥର ଲକ୍ଷ୍ମଣ ଗମ୍ଭୀର ହୋଇ କହିଲେ, "ଦେଖ ବାବୁ, ପିଲା ଦିନରୁ ଯେଉଁ ବାଟ ତୁମେ ଧରିବାକୁ ଯାଉଛ ତାହା ବଣ ଜଙ୍ଗଲଠାରୁ ଅଧିକ ବିପଦପୂର୍ଣ୍ଣ । ଏଠାରେ କାମ କଲେ ତୁମକୁ ସକଳ ବସ୍ତୁ ତ୍ୟାଗ କରିବାକୁ ପଡ଼ିବ । ନିଆଁ ସହିତ ଖେଳିବାକୁ ପଡ଼ିପାରେ । ସେଥିପାଇଁ ତୁମଠାରେ ପ୍ରଚୁର ସାହସ ଲୋଡ଼ା । ଭୟଥିଲେ କଂଗ୍ରେସ କାମକରି ପାରିବ ନାହିଁ ।

ଏଥର ଲକ୍ଷ୍ମଣ କୃଷ୍ଣଚନ୍ଦ୍ରଙ୍କ ପାଦରୁ ମୁଣ୍ଡ ଯାଏ ଆଖି ବୁଲାଇ ଆଣିଲେ । କହିଲେ, "ତୁମକୁ ଯଦି ଭୟ ଲାଗୁଛି, ତେବେ ଏବେ ବି ସମୟ ଅଛି, ତୁମେ ତୁମ ଘରକୁ ଫେରି ଯାଇପାର । ତୁମକୁ ଆମ ଲୋକ ନେଇ ଆଜି ଛାଡ଼ି ଦେଇ ଆସିବ ।"

କୃଷ୍ଣଚନ୍ଦ୍ର ଭାବିନେଲେ, ଏ ମଣିଷଟି ପାଇଁ ଯେତେବେଳେ ଶହ ଶହ ଲୋକ ଭୟ ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ମାତିଛନ୍ତି, ସେ କାହିଁକି ବା ଡ଼ରିବେ ? ଏତେ ଦୂର ଆସି କାହିଁକି ସେ ଲେଉଟି ଯିବେ ?

ସେ ଦୃଢ଼ କଣ୍ଠରେ କହିଲେ, "ମୋର ମୋଟେ ଭୟ ନାହିଁ ।"

ଲକ୍ଷ୍ମଣଙ୍କ ମୁହଁ ତେଜୀୟାନ ହୋଇ ଉଠିଲା । ସେ କୃଷ୍ଣଚନ୍ଦ୍ରଙ୍କୁ କୁଣ୍ଢାଇ ପକାଇ କହିଲେ, "ସାବାସ୍ ! ତୁମେ ଏଇଠାରେ ରୁହ । କୌଣସି ଅସୁବିଧା ହେବ ନାହିଁ ଖାଇବା ପିଇବା ବିଷୟରେ ।"

କୃଷ୍ଣଚନ୍ଦ୍ର ବଶୋଇ ତେନ୍ତୁଳଗୁମ୍ମାରେ ଦୁଇ ତିନ ଦିନ ରହିଲେ ଲକ୍ଷ୍ମଣଙ୍କ ଅତିଥି ହୋଇ । ସେଇ ଅଳ୍ପ ଦିନ ମଧ୍ୟରେ ସେ ଲକ୍ଷ୍ମଣ ନାୟକଙ୍କ ଦୈନନ୍ଦିନ କାର୍ଯ୍ୟକଳାପ ପର୍ଯ୍ୟବେକ୍ଷଣ କରିବାର ସୁଯୋଗ ପାଇଥିଲେ ।

ସେତେବେଳେ ତେନ୍ତୁଳଗୁମ୍ମା ଗ୍ରାମଟି ଥିଲା ଖୁବ୍ ପରିଷ୍କାର । ସବୁ ଘରର ଆଗରେ ଓ ପଛରେ ବଡ ବଡ଼ ବାଡ଼ି ଗଢ଼ିଛି । ସେଥିରେ ବାଉଁଶର ବାଡ଼ । ସମସ୍ତଙ୍କ ବାଡ଼ିରେ କପା ଗଛ । ବିଲରେ ଧାନ ଗଛ ଓ ମାଣ୍ଡିଆ ଗଛ । ସାମାନ୍ୟ ଧୂଆଁପତ୍ର ଗଛ ବି ହୁଏ ।

ଲୋକେ ଛେଳି, ମେଣ୍ଢା, ଗାଈଗୋରୁ ପୋଷିଛନ୍ତି । କିନ୍ତୁ କୁକୁଡ଼ା ଓ କଳାଛେଳି ଦେଖିବାକୁ ସେ ପାଇଲେ ନାହିଁ । ତେନ୍ତୁଳଗୁମ୍ମାର ଲୋକେ ମଦ ପିଉ ନଥିଲେ । କେତେ ଜଣ ସଦ୍ୟ ସଲପ ରସ ପିଉଥିଲେ ।

ଲକ୍ଷ୍ମଣ ଭୋରରୁ ଉଠନ୍ତି । ସୂର୍ଯ୍ୟ ଉଦୟ ପୂର୍ବରୁ ପ୍ରାତଃ କର୍ମ ଶେଷ ହୋଇଯାଏ । ଘର ଅଗଣାରେ ଚରଖା ଚିହ୍ନିତ ତିରଙ୍ଗା ପତାକା ଉଡୁଥାଏ । ଘରେ ଗାନ୍ଧିଜୀଙ୍କ ଫୋଟୋ । ତା ଉପରେ ଫୁଲମାଳ ସର୍ବଦା ଶୋଭା ପାଉଥାଏ । ସେଇ ସକାଳୁ ଗାଁରୁ ବି କେତେ ଜଣ କର୍ମୀ ଲକ୍ଷ୍ମଣଙ୍କ ଘରକୁ ଆସନ୍ତି । ସେମାନେ ତିରଙ୍ଗା ପତାକା ତଳେ ଫୁଲ ଚଢ଼ାନ୍ତି । ମହାତ୍ମାଗାନ୍ଧିଙ୍କ ଫୋଟରେ ଚନ୍ଦନ ଟୋପା ଲଗାଯାଏ, ଧୂପ ଦିଆଯାଏ । ସମବେତ ଭାବରେ ରାମଧୂନ୍ ବୋଲାଯାଏ । ତା ପରେ ଗାନ୍ଧିଜୀଙ୍କ ପ୍ରିୟ ଭଜନ ରାଗ ତାଳ ସହିତ ଗାନ କରାଯାଏ । ଏହି ଭଜନଟି ସକାଳେ ଓ ସନ୍ଧ୍ୟାରେ ଦୁଇଥର ବୋଲାଯାଏ । ଗୀତଟି ଲକ୍ଷ୍ମଣଙ୍କର ମଧ୍ୟ ଭାରି ପ୍ରିୟ ।

ବୈଷ୍ଣବ ଜନତୋ ତେନ କହିୟେ,
ଜେ ପୀଡ଼ ପରାୟି ଜାନେ ରେ ।
ପର ଦୁଃଖେ ଉପକାର କରେ ତୋହି
ମନ ଅଭିମାନ ନା ଆନେ ରେ । ୧ ।
ସକଲ ଲୋକ ମାଁ ସହୁନ ବନ୍ଦେ
ନିନ୍ଦା ନ କରେ କେନି ରେ ।

ବାଚକାଛମନ ନିଶ୍ଚଳ ରଖେ
ଧନ ଧନ ଜନମୀ ତେନ ରେ ।୨।
ସମଦୃଷ୍ଟିନେ ତୃଷ୍ଣା ତ୍ୟାଗୀ
ପର ସ୍ତ୍ରୀ ଜେ ନେ ମାତ ରେ ।
ଜହ୍ବା ଥକ ଅସତ୍ୟ ନ ବୋଲେ
ପରଧନ ନ ବୋଝାଲେ ହାତ ରେ ।୩।
ମୋହ ମାୟା ବ୍ୟାପେ ନହି ଜନେ
ଦୃଢ଼ ବୈରାଗ୍ୟ ଯେ ନ ମନ ମାରେ ।
ରାମ ନାମ ଶୁଁ ତାଲି ଲଗି
ସକଲ ତୀରଥ ତେନା ତନ ମାରେ ।୪।
ବଣଲୋଭୀ ନେ କପଟ ରହିତ ଛେ
କାମ କ୍ରୋଧ ନିବାର୍ଯ୍ୟାରେ ।୫।
ଭଣେ ନରସୈଁୟା ତେନୁ ଦରଶନ କରତାଂ
କୁଳ ଏକୋ ତେର ତାର୍ଯ୍ୟାରେ ।୬।

(ଏହି ଭଜନଟି ପ୍ରଥମେ ୧୯୩୦ ଲବଣ ସତ୍ୟାଗ୍ରହ ସମୟରେ ରାତି ଅଧରେ ଗାନ୍ଧିଜୀ ଜେଲ୍ ଯିବା ପୂର୍ବରୁ ବୋଲାଇଥିଲେ )

ଭଜନ ପରେ ଲକ୍ଷ୍ମଣ ନାୟକ ସାମାନ୍ୟ କିଛି ଭାତ ଓ ପେଜ ଖାଆନ୍ତି । ଡାଲି ବଦଳରେ ପଡଥାଏ ଟିକିଏ ଲୁଣ ଓ ମେଞ୍ଚେ ତେନ୍ତୁଳି । ଏହାକୁ ଗେଞ୍ଜି କୁହାଯାଏ । ଏ ପ୍ରକାର ଖାଦ୍ୟ ସେ ସମୟରେ ସମସ୍ତ କଂଗ୍ରେସ କର୍ମୀ ଖାଉଥିଲେ । ଏହାର କାରଣ ହେଉଛି, ଜେଲ୍ ଭିତରେ ସେତେବେଳେ ବନ୍ଦୀମାନଙ୍କୁ ଏହି ଖାଦ୍ୟ ହିଁ ଦିଆଯାଉଥିଲା । ଭବିଷ୍ୟତରେ ଜେଲ୍ ଗଲେ ଅରୁଚି ଓ ଅସୁବିଧା ଲାଗିବ ନାହିଁ ବୋଲି କଂଗ୍ରେସ କର୍ମୀମାନେ ଆଗରୁ ସେ ପ୍ରକାର ଖାଦ୍ୟରେ ଅଭ୍ୟସ୍ତ ହୋଇ ଯାଉଥିଲେ । ସେଇପରି ତଳେ ଭୂଇଁରେ କମ୍ବା ଭୂଇଁରେ ପାଳ ନଡ଼ା ବିଛାଇ ମଧ୍ୟ ସେମାନେ ବେଳେବେଳେ ଶୋଉଥିଲେ ।

ଜଳଖିଆ ପରେ ଲକ୍ଷ୍ମଣ ଦାଣ୍ଡ ମେଲରେ ବସନ୍ତି । ଘଣ୍ଟେ ଦୁଇ ଘଣ୍ଟା ଚରଖାରେ ସୂତା କଟାଯାଏ । ଦିନ ତମାମ୍ ସେ ଖାସ୍ତଣ କାର୍ଯ୍ୟବ୍ୟସ୍ତ

ରହନ୍ତି । ବିଭିନ୍ନ ଗ୍ରାମରୁ ଲୋକେ ନାନା ସମସ୍ୟା ନେଇ ଆସନ୍ତି । ଉଭୟ କଂଗ୍ରେସ କାମ ମୁସ୍ତାଦାରର କର୍ତ୍ତବ୍ୟ ତୁଲାଇବାକୁ ପଡ଼େ । ନାନା ଖବର ଆସେ ଏବଂ ଅନେକ ଖବର ବାହାରକୁ ପଠାଇବାକୁ ହୁଏ । ପ୍ରାୟ ପ୍ରତିଦିନ କଂଗ୍ରେସ ଅଫିସରୁ କିଛି କିଛି ନିର୍ଦ୍ଦେଶ ଆସେ । ଦୂର ଗାଁଗୁଡ଼ିକୁ ଲୋକ ପଠାଯାଏ ସଭ୍ୟଚାନ୍ଦା ଆଦାୟ କରିବାକୁ । କେଉଁ ଗାଁକୁ ନୂଆରେ ଚରଖା ପଠାଯାଏ ତ କେଉଁ ଗାଆଁରୁ କିଏ ଚରଖା ମରାମତି କରିବାକୁ ଆସେ । ଏହାଛଡ଼ା କାହାର ଦେହ ବେମାର ହେଲେ ସେ ଚେରମୂଳ କିମ୍ବା ଝାଡ଼ଫୁଙ୍କ ପାଇଁ ଲକ୍ଷ୍ମଣଙ୍କ ଦ୍ୱାରସ୍ଥ ହୁଅନ୍ତି ।

ଲକ୍ଷ୍ମଣଙ୍କର ବଦଭ୍ୟାସ କିଛି ନଥିଲା । ସେ ମଦ୍ୟପାନ କିମ୍ବା ଧୂମ୍ରପାନ କରନ୍ତି ନାହିଁ । କେବଳ ବେଳେବେଳେ ଧୂଆଁପତ୍ରରେ ଚୂନ ଲଗାଇ ଚୋବାଉ ଥିଲେ ।

ଲକ୍ଷ୍ମଣ ପଢ଼ି ପାରନ୍ତି କିନ୍ତୁ ଲେଖାଲେଖି ବିଶେଷ କରନ୍ତି ନାହିଁ । ଏଥିରେ ତାଙ୍କୁ ସାହାଯ୍ୟ କରନ୍ତି ଶ୍ରୀ ବଳରାମ ପୂଜାରୀ । ସେ ଲକ୍ଷ୍ମଣଙ୍କର ଲେଖାପୋଖା ଶଳା । ବଳରାମ ଚିଠିପତ୍ର ପଢ଼ାଇ ଶୁଣାନ୍ତି ଏବଂ ଲକ୍ଷ୍ମଣ ଯାହା ଲେଖିବାକୁ କହନ୍ତି ସେ ସବୁ ଲେଖନ୍ତି ।

ଚିଠିପତ୍ର ବିଶେଷ କରି ଆସେ ଡୁମରର ନୀଳକଣ୍ଠ ପାତ୍ରଙ୍କ ପାଖରୁ । ବଳରାମଙ୍କ ଛଡ଼ା ଲକ୍ଷ୍ମଣଙ୍କର କାମରେ ସାହାଯ୍ୟ କରନ୍ତି ମୋତିରାମ ସିଂ ମାଡ଼କାମୀ ଓ ତାଙ୍କର ଆଉ ଜଣେ ଶଳା ବନସିଂ ପୂଜାରୀ ।

ତେଣେ ଘରେଇ ଜୀବନର ସକଳ ଜଞ୍ଜାଳ ବହନ କରିଛନ୍ତି ତାଙ୍କର ସହଧର୍ମିଣୀ ମଙ୍ଗୁଳି । ଲକ୍ଷ୍ମଣ ବହୁ କୁଟୁମ୍ବୀ । ଭାଇ, ପୁଅ, ଝିଅ, ପୁତୁରା, ଝିଆରୀ ହୋଇ ପ୍ରାୟ କୋଡ଼ିଏ ଜଣ ପ୍ରାଣୀ । କେହି ଭିନ୍ନ ବଣ୍ଟା ହୋଇ ନାହାନ୍ତି । ଏଡ଼େ ବଡ଼ କୁଟୁମ୍ବର ଭାର ଲକ୍ଷ୍ମଣଙ୍କ ଉପରେ । ଏଣେ ଲକ୍ଷ୍ମଣଙ୍କର ବାହାର କାମ, ଯଥା—ଗାଁରେ ନାୟକର ଦାୟିତ୍ୱ ଏବଂ ବିଶେଷ କରି ସ୍ୱାଧୀନତା ସଂଗ୍ରାମ ପାଇଁ ବିରାଟ ଏକ ଅଞ୍ଚଳରେ ସାଂଗଠନିକ କାମର ଚାପ ଏତେ ବେଶୀ ଥିଲା ଯେ ସେ ଘର କଥା

ମୋଟେ ଦେଖି ପାରୁନଥିଲେ। ତାଙ୍କର ଯୋଗ୍ୟା ପତ୍ନୀ ମଙ୍ଗୁଳି ସ୍ୱତଃ ପ୍ରବୃତ୍ତ ହୋଇ ସମସ୍ତ ଘର ନିଜେ ମୁଣ୍ଡାଇ ଥିଲେ। ସେ ଘରର କୌଣସି ସମସ୍ୟା ଲକ୍ଷ୍ମଣଙ୍କ ନିକଟରେ ଉଠାଉ ନଥିଲେ। ସେ ସନ୍ତାନଙ୍କର ଅଭାବ ଅସୁବିଧା ନିଜେ ମେଣ୍ଟାଉ ଥିଲେ। ସକାଳରୁ ସଞ୍ଜ ଯାଏ ଘର ଓ ବିଲବାଡ଼ିର ନାନା କାର୍ଯ୍ୟରେ ସେ ନିଜକୁ ହଜାଇ ଦେଉଥିଲେ। ଗାଁର ଅନ୍ୟାନ୍ୟ ସ୍ତ୍ରୀଙ୍କ ଭଳି ନାଚ ଗୀତ ପାଇଁ ତାଙ୍କର ସମୟ ନଥିଲା କି ଇଚ୍ଛା ବି ନଥିଲା।

ଲକ୍ଷ୍ମଣଙ୍କ ଘରକୁ ତ ଦୂର ଦୂରାନ୍ତରୁ ପ୍ରତିଦିନ ଦଶ ବାର ଜଣ ଅତିଥି ଆସନ୍ତି। ସେମାନଙ୍କର ଦେଖାରୁ ଭାର ମଙ୍ଗୁଳିଙ୍କର। ସେ ଖୁବ୍ ଭଲ ଅତିଥି ସତ୍କାର କରିପାରନ୍ତି। ମଙ୍ଗୁଳି ଭାରି ଭଦ୍ର ଓ ଶାନ୍ତ। କଥାବାର୍ତ୍ତା ଧୀର।

ମଙ୍ଗୁଳି ଓ ଲକ୍ଷ୍ମଣଙ୍କର ଦାମ୍ପତ୍ୟ ଜୀବନ ଖୁବ୍ ସୁଖକର ଥିଲା। ଜଣେ ଅନ୍ୟ ଜଣଙ୍କର ମନକୁ ନେଇ ଓ ଅଭିରୁଚିକୁ ସମ୍ମାନ ଦେଇ ଚଳୁଥିଲେ।

ଅଳ୍ପ ଦିନର ରହଣି ଭିତରେ କୃଷ୍ଣଚନ୍ଦ୍ର, ଲକ୍ଷ୍ମଣଙ୍କ ସକଳ କାର୍ଯ୍ୟାବଳୀ ସ୍ୱଚକ୍ଷୁରେ ଦେଖି ଯେଉଁ ଧାରଣା କଲେ ତାହା ହେଲା, ଲକ୍ଷ୍ମଣ ଅନ୍ୟାନ୍ୟ ଗ୍ରାମବାସୀଙ୍କ ଭଳି ଚଳୁଥିଲେ ମଧ୍ୟ ସେ ଥିଲେ ଜଣେ ମାନ୍ୟଗଣ୍ୟ ବ୍ୟକ୍ତି। ସଦା ପରୋପକାରୀ। ଗ୍ରାମର ସକଳ ସମସ୍ୟାରେ ସେ ଜଡ଼ିତ। ଉପରେ ପଡ଼ି ଆପଣ ଲୋକଙ୍କ ସୁଖ ଦୁଃଖରେ ଭାଗୀଦାର ହୁଅନ୍ତି। ସେ ମର୍ମେ ମର୍ମେ ଅନୁଭବ କରୁଥିଲେ ଯେ ଲୋକଙ୍କ ମନରେ ଆତ୍ମସଚେତନତା ଜାଗ୍ରତ କରିବାକୁ ହେଲେ ଗାନ୍ଧୀବାଦକୁ କାର୍ଯ୍ୟକାରୀ କରିବା ହେଉଛି ଏକମାତ୍ର ପନ୍ଥା। ଗାନ୍ଧୀବାଦ ଭିତରେ ରହିଛି ମଣିଷକୁ ଏକ ପରିପୂର୍ଣ୍ଣ ମଣିଷରେ ରୂପାନ୍ତର କରିବାର ଦର୍ଶନ। ମଣିଷ ନିଜକୁ ବୁଝୁ। ଉଦାର କରି ମାନବିକ ମୂଲ୍ୟବୋଧର ସମ୍ମାନ ରଖୁ। ଅପର ମଣିଷ ଉପରେ କାଳୁ ଭାବନା ବା ପ୍ରଭାବ ଲଦିପି

ନ ଦେଉ । ଜଣେ ଅନ୍ୟ ଜଣକୁ ଜାତି-ଧର୍ମ-ବର୍ଣ୍ଣ-ନିର୍ବିଶେଷରେ ସମ୍ମାନ ଦେଉ । ସାମାନ୍ୟ କଥା ପାଇଁ ସେ ଅନ୍ୟର ଗୋଡ଼ଟାଣିଆ ନ ହେଉ । ଏସବୁ ପାଇଁ ଅହିଂସା, ପ୍ରେମ, ସ୍ୱାବଲମ୍ବନଶୀଳତା ଇତ୍ୟାଦି କେତୋଟି ଅସ୍ତ୍ର ମାତ୍ର । ଏ ପ୍ରକାର କାର୍ଯ୍ୟକ୍ରମରୁ ଯେଉଁ ସମାଜର ଉଦ୍ଭବ ହେବ, ସେଥିରେ ଲୋକେ ନ୍ୟାୟ ପାଇଁ ଅକାତରରେ ପ୍ରାଣଦାନ କରିପାରିବେ ଏବଂ ସେମାନଙ୍କର ଅଭିଯାନ ବିଜୟଶ୍ରୀରେ ମଣ୍ଡିତ ହେବ ।

ଲକ୍ଷ୍ମଣ ନାୟକଙ୍କ କାର୍ଯ୍ୟାବଳୀରୁ ସ୍ପଷ୍ଟ ହୁଏ ଯେ ଏ ପ୍ରକାର ସମାଜ ଗଠନ ପାଇଁ ଲୋକେ ହେବାକୁ ପଡ଼ିବ ଆତ୍ମସଂଯମୀ, ଶୃଙ୍ଖଳ ଏବଂ ଏକତାବଦ୍ଧ । ଇଂରେଜ ସରକାରର ଶକ୍ତି ଅମାପ । ନିୟମକାନୁନ୍‌ର ବ୍ୟତିକ୍ରମ କରିହେବ ନାହିଁ । ତେଣୁ କାନୁନ୍‌ର ପକ୍ଷରେ ରହିଲେ କେହି ଅନିଷ୍ଟ ଘଟାଇ ପାରିବେ ନାହିଁ । ନିୟମକାନୁନ୍ ଭିତରେ ରହି ବିପ୍ଳବ କରିବାକୁ ହେଲେ ଗାନ୍ଧୀ ଦର୍ଶନ ହିଁ ସର୍ବୋତ୍କୃଷ୍ଟ ପନ୍ଥା । ତା ପାଇଁ ସେବା, ଶୃଙ୍ଖଳା ଓ ଆତ୍ମସଚେତନତା ଅପରିହାର୍ଯ୍ୟ ।

ଏହାହିଁ ଥିଲା ଲକ୍ଷ୍ମଣ ନାୟକଙ୍କର ପରବର୍ତ୍ତୀ ଜୀବନର ଦିଗ୍‌ଦର୍ଶନ ।



## ଦଶ

ଚେନ୍ନାଇଗୁମ୍ଫାରେ ଦିନଦିନ ରହିଲା ପରେ ବଳରାମ ପୂଜାରୀଙ୍କ ସହିତ ଆଲୋଚନା କରି ଲକ୍ଷ୍ମଣ କୃଷ୍ଣଚନ୍ଦ୍ର ଷଣ୍ଢୋଇଙ୍କୁ ପଠେଇଲା ଦୂରବର୍ତ୍ତୀ ଜଡପୁଗିଣକୁ ପଠାଇଦେଲେ । ସେଠାରେ କୃଷ୍ଣଚନ୍ଦ୍ର ଗୋଟିଏ ଗ୍ରେଟ ସ୍କୁଲ ଖୋଲିବେ । ସାନ ସାନ ପିଲାମାନଙ୍କୁ ପାଠ ପଢ଼ାଇବେ । ବୟସ୍କ ଲୋକଙ୍କୁ ସାକ୍ଷର କରାଇବେ । ବଳକା ସମୟରେ କଂଗ୍ରେସ ପାଇଁ ସଭ୍ୟ ସଂଗ୍ରହରେ ସାହାଯ୍ୟ କରିବେ ଏବଂ କଂଗ୍ରେସର ଚିଠିପତ୍ର ପଢ଼ି ଶୁଣାଇବେ । ସେ ଦରମା ପାଇବେ ନାହିଁ । ଗ୍ରାମବାସୀମାନେ ଯାହା ଯେଉଁଦିନ ପାଳି କରିଦେବେ ସେଥିରେ ସେ ଚଳିବେ ।

କୃଷ୍ଣଚନ୍ଦ୍ର ଷଣ୍ଢୋଇ ଏଥର ଜଡପୁଗିଣରେ ରହିଲେ । ସେ ଗୋଟିଏ ମେନ୍ଦା ଘରେ ରହନ୍ତି । ୧୭ ଜଣ ଛାତ୍ର । ଗ୍ରେଟ ଗ୍ରେଟ ପିଲା । ରାତିରେ ୫।୬ ଜଣ ଯୁବକ ଓ ପ୍ରୌଢ଼ ଆସନ୍ତି ଅକ୍ଷର ଶିଖିବାକୁ । ପ୍ରତ୍ୟେକ ଘର ପାଳି କରି କୃଷ୍ଣଚନ୍ଦ୍ରଙ୍କ ପାଇଁ ଭାତଆ ଆଣିଦିଅନ୍ତି ।

ଦିନ ଗଡ଼ିବାରେ ଲାଗିଲା । କୃଷ୍ଣଚନ୍ଦ୍ରଙ୍କର କିଛି ଅସୁବିଧା ହୋଇନାହିଁ । ମଝିରେ ମଝିରେ ଲକ୍ଷ୍ମଣ ନାୟକ ଜଡପୁଗିଣ ଆସନ୍ତି । ସେ ଆସିବା ଶୁଣିଲେ ଗାଁର ଯାକର ଲୋକ ତାଙ୍କ ପାଖକୁ ଚୁମ୍ବକ ଭଳି ଟାଣି ହୋଇ ଆସନ୍ତି । ଡୋକରା ଡୋକରି (ବୁଢ଼ା ବୁଢ଼ୀ), ଧାଂଡ଼ା ଧାଂଡ଼ୀ (ଯୁବକ ଯୁବତୀ) ସମସ୍ତେ । ଲକ୍ଷ୍ମଣ ନାୟକ କେବେ ନେତା ପରି ଆସନ୍ତି ନାହିଁ । ଆସନ୍ତି ସତେ ଯେପରି ସେ ଆପଣା ଘରକୁ ହିଁ

ଆସିଛନ୍ତି । ଘର ଘର ପଶି ସୁଖ ଦୁଃଖ ବୁଝନ୍ତି । ସେ ସମସ୍ତଙ୍କ ସୁଖରେ ସୁଖୀ ଓ ଦୁଃଖରେ ଦୁଃଖୀ । କଥା ଛଳରେ ସେ କଂଗ୍ରେସ କଥା, ତାର ବାର୍ତ୍ତାମାନ ବଖାଣନ୍ତି । ସେଥିକୁ ସମୟ ନଥିଲେ କଂଗ୍ରେସ କଥା ଉଠେ ନାହିଁ ।

ଗାଁ ଲୋକେ ବି ଜାଣନ୍ତି ଲକ୍ଷ୍ମଣ ତାଙ୍କର ଭିତରୁ ଜଣେ । ଯାନଯାତ୍ରାରେ ଗୀତ ନାଚରେ ମାତୁଛନ୍ତି । ସେହିପରି କାହାର କିଛି ଦୁଃଖ ଦୁର୍ଦ୍ଦଶା ପଡ଼ିଲେ ଲକ୍ଷ୍ମଣ ଆଖିରେ ଲୁହ ବହୁଛି । କିନ୍ତୁ ସେ ଖାଲି କାନ୍ଦୁ ନାହାଁନ୍ତି, ଦୁର୍ଦ୍ଦଶାକୁ ପାର ହେବାକୁ ଉପାୟ ବତାଉଛନ୍ତି ।

ଦିନକେ ଲକ୍ଷ୍ମଣ ୩୦ ମାଇଲ ଚାଲିପାରନ୍ତି । ଥରେ ଘରୁ ଗୋଡ଼ କାଢ଼ିଲେ ୧୦ ଦିନଯାଏ ଗସ୍ତ ଚାଲେ । ଗାଁକୁ ଗାଁ ଗସ୍ତ କଲାବେଳେ ସେ ହାତରେ ଧରିଥାନ୍ତି ତିରଙ୍ଗା ପତାକାର ଝଣ୍ଡା । କାନ୍ଧରୁ ଗୋଟିଏ କନା ବ୍ୟାଗ୍ ଝୁଲୁଥାଏ । ତା ଭିତରେ ଥାଏ ଗୋଟିଏ ଲୋଟା, ଗାମୁଛାଟିଏ, କଲମ ଓ କଂଗ୍ରେସ ରସିଦ । ଏତିକ ମାତ୍ର ସମ୍ବଳକୁ ନେଇ ସେ ଶହ ଶହ ଗ୍ରାମ ଗସ୍ତ କରିପକାନ୍ତି । ଯେଉଁ ଗାଁରେ ସଂଧ୍ୟା ହେଲା, ଯେଉଁ ଘରେ ସେ ପଶିଲେ ସେଇଠି ଦୁଃଖସୁଖ ହେଉ ହେଉ ଖାଇଲେ ଓ ଶୋଇଲେ । ଘର ଭିତରେ ସ୍ଥାନ ନଥିଲେ ପିଣ୍ଡାରେ ତଳେ ବିଛାଇବାକୁ ମଶିଣାଟିଏ ମିଳିଲା ତ ମିଳିଲା, ନହେଲେ ସେଇ ମାଟି ଭୂଇଁରେ ସେ ଶୋଇଯାଆନ୍ତି । ଯେଉଁଠାରେ ଭୋକ ଲାଗିଲା ସେଠି ଯାହାର ଘର ହୋଇଥାଉ ଖାଇବାକୁ ମାଗନ୍ତି । ଗ୍ରାମବାସୀମାନେ ତ ଖୁବ୍ ଅତିଥି ପରାୟଣ । କିଛି ନା କିଛି ଦିଅନ୍ତି । ସେ ଶାଗ ହେଉ, ଭାତ ହେଉ, ଚେଲୁଲମଞ୍ଜି ହେଉ କି କରଡ଼ି ସିଝା ହେଉ ଯାହା ମିଳିଲା ସେଥିରେ ସନ୍ତୋଷ ।

ଲକ୍ଷ୍ମଣ ନାୟକ ଗାଁ ଗାଁ ବୁଲିବାରେ ଯେ ଖାଲି କଂଗ୍ରେସ ପ୍ରଚାରର ମୁଖ୍ୟ ଉଦ୍ଦେଶ୍ୟ ଥିଲା ତା ନୁହେଁ । ଲୋକଙ୍କର ତ ନାନା ସମସ୍ୟା । ସେ ସବୁର ସମାଧାନ କରିବା ତାଙ୍କର ଏକ ପ୍ରିୟ କାର୍ଯ୍ୟ ଥିଲା । ଗାଁ ଗାଁ ଭିତରେ ଓ ଲୋକଙ୍କ ଭିତରେ ଜମି ଗଣ୍ଡଗୋଳ ମେଣ୍ଟାଇବା,

ରୋଗ ବ୍ୟାଧିରେ ଔଷଧ ବିତରଣ କରିବା, ଜଙ୍ଗଲରେ ଗଛ କାଟିଲେ ବା ଅନ୍ୟ କେଉଁ କାରଣରୁ କାହାକୁ ଜୋରିମାନା ପଡ଼ିଲେ ତାକୁ ସାହାଯ୍ୟ କରିବା, ଅସୁବିଧା ସମୟରେ ଗିରିରେ ଚଢ଼ିବା, ସ୍ୱାଧୀନତା ଛାମରେ ବା କେଉଁ ମିଥ୍ୟା କେସରେ କେହି ଲୋକ ଜେଲ ଗଲେ ତା' କୁଟୁମ୍ବକୁ ପୋଷିବା ଇତ୍ୟାଦି ତାଙ୍କର ବହୁମୁଖୀ କାର୍ଯ୍ୟାବଳୀର କେତେକ ନମୁନା ।

ମଝିରେ ମଝିରେ କୃଷ୍ଣଚନ୍ଦ୍ର ଆଖପାଖ ଗାଁକୁ ଯାଇ ଗାଁର ଓ ଲୋକମାନଙ୍କର ଅବସ୍ଥା ପ୍ରତ୍ୟକ୍ଷରେ ଦେଖି ଆସନ୍ତି । ସବୁ ଗାଁରେ ଚେଳୁଳଗୁମ୍ଫା ଚର କାର୍ଯ୍ୟମାନ ହେଉଛି । ସବୁଠି ସେଇ କପାଗୁଣ, ସୂତାକଟା ଓ ଲୋକଙ୍କ ମନରେ ଅହିଂସା ପ୍ରତି ଆସକ୍ତି । ପ୍ରତ୍ୟେକ ଗାଁରେ ଗୋଟିଏ ଗୋଟିଏ କଂଗ୍ରେସ କମିଟି । ଏମାନେ ମୁଖ୍ୟତଃ ଖଦଡ଼ର ପ୍ରଚାର କରୁଥିଲେ ଓ ଗ୍ରାମବାସୀଙ୍କୁ ମଦ୍ୟପାନରୁ ବିରତ କରାଉଥିଲେ ।

ଲକ୍ଷ୍ମଣ ନାୟକ ବେଳେବେଳେ କୃଷ୍ଣଚନ୍ଦ୍ର ବଶୋଇଙ୍କୁ ମଧ୍ୟ ସାଙ୍ଗରେ ନେଇ କେତେକ ଦୁର୍ଗମ ପଲ୍ଲୀ ଗସ୍ତ କରିଥିଲେ । ଗୋଟିଏ ସମ୍ପୂର୍ଣ୍ଣ ନୂଆ ଗାଁକୁ ପ୍ରଥମେ ଗଲାପୂର୍ବରୁ ଆଗରୁ ସେଠାକୁ ଅମୁକ ଦିନ ଲକ୍ଷ୍ମଣ ଆସିବେ ବୋଲି ଖବର ପଠାଯାଉଥିଲା । ଲକ୍ଷ୍ମଣ ନାୟକ ଉକ୍ତ ଗ୍ରାମରେ ପହଞ୍ଚିଲାବେଳକୁ ସମସ୍ତେ ତାଙ୍କ ପଥକୁ ଉଦଗ୍ରୀବ ହୋଇ ଚାହିଁ ରହିଥାନ୍ତି । ଆଗରୁ ଖବର ନ ଯାଇଥିଲେ ମଧ୍ୟ ତାଙ୍କ ଅସୁବିଧା ହୁଏ ନାହିଁ । ଗାଁକୁ ଯାଇ ସେ ଘରେ ଘରେ ପଶି ଦୁଃଖ ବୁଝନ୍ତି । ଲକ୍ଷ୍ମଣଙ୍କୁ ତ ଓଡ଼ିଆ ଛଡ଼ା ବିଭିନ୍ନ ଆଦିବାସୀଙ୍କ ଦେଶିଆ, ଗାଦବା, ପରଜା, କୋୟା ଭାଷା ଭଲ ଜଣାଥିଲା । ତେଣୁ ଯେ କୌଣସି ଆଦିବାସୀ ଅଞ୍ଚଳରେ ତାଙ୍କୁ ଲୋକଙ୍କ ସହିତ ଭାବର ଆଦାନପ୍ରଦାନ ପାଇଁ ଅସୁବିଧା ହୁଏ ନାହିଁ ।

ଲକ୍ଷ୍ମଣ ନାୟକଙ୍କ ଅନୁରୋଧକ୍ରମେ ଗ୍ରାମବାସୀମାନେ ଗୋଟିଏ ଗଛ ମୂଳେ କିମ୍ବା କାହାର ମେଲଘରେ ରୁଣ୍ଡ ହୁଅନ୍ତି ଅନ୍ୟମାନେ ଓ ସେ

ଚଳେ ବସନ୍ତ । ପ୍ରଥମେ ଲକ୍ଷ୍ମଣ ନାୟକ ହାତରେ ଧରିଥିବା ତିରଙ୍ଗା ପତାକାକୁ ଭୂଇଁରେ ପୋତି ମୁଣ୍ଡିଆ ମାରନ୍ତି । ତା ପରେ ସେ ଭାଷଣ ଦଅନ୍ତି । ଛିଡ଼ା ହୋଇ, ହାତ ଗୋଡ଼ ହଲେଇ ସେ ନାଟକୀୟ ଭାବେ ବକ୍ତୃତା ଦଅନ୍ତି ନାହିଁ । ବରଂ ଜଣାପଡ଼େ ଜାଣିପାଶି କମ୍ବା କଏ ମଲ ହଜିଲାବେଳେ ଯେପରି ଲୋକେ ଏକାଠି ବସି କଥାବାର୍ତ୍ତା ହୁଅନ୍ତି ସେପରି ଲକ୍ଷ୍ମଣ ସୁଖଦୁଃଖ ପଚାରନ୍ତି । ଆପଣା କଥା ଭିତରେ ସେ ଗ୍ରାମବାସୀଙ୍କର ଉତ୍ପୀଡ଼ନ ଓ ଦୁଃଖ ଯାତନାକୁ ଏପରି ପ୍ରସ୍ଫୁଟିତ କରନ୍ତି ଯେ ଲୋକେ ଭାବନ୍ତି ନିଜର ହୃଦୟ ଭିତରର ଅବରୁଦ୍ଧ ଭାବନା ଶବ୍ଦରେ ରୂପାନ୍ତରିତ ହୋଇ ଲକ୍ଷ୍ମଣଙ୍କ ତୁଣ୍ଡରୁ ଝିର ଝିର ହୋଇ ଝରି ପଡ଼ୁଛି ।

ଲକ୍ଷ୍ମଣ କର୍ମୀମାନଙ୍କ ସହିତ କଥା ହେଲାବେଳେ ଓଡ଼ିଆରେ କହନ୍ତି । କିନ୍ତୁ ଗାଁ ଗହଳରେ ଦୁଃଖସୁଖ ହେଲାବେଳେ ପ୍ରଚଳିତ ଦେଶିଆ ଭାଷାରେ ହିଁ କଥା ହୁଅନ୍ତି ।

ଲକ୍ଷ୍ମଣ ନାୟକଙ୍କ ସମଗ୍ର ବକ୍ତୃତାକୁ କେତୋଟି ସୋପାନରେ ବିଭକ୍ତ କରିଯାଇପାରେ । ପ୍ରଥମତଃ ସେ ଗାଁ ଲୋକଙ୍କ ସଙ୍ଗରେ ବସି ସାଧାରଣ ସୁଖଦୁଃଖ ଛଳରେ ସରକାରଙ୍କ ଅତ୍ୟାଚାର ବଖାଣନ୍ତି ଯାହା ଲୋକଙ୍କର ହେଉଥିବା । ତାର ଏକ ଉଦାହରଣ ହେଲା —

"ମୁଇଁ ତେନ୍ତୁଳିଗୁମ୍ମା ଗାଆଁ ଥାନୁ ଦଶ୍ କୋଶ୍ ବାଟ ହେଇଁ ଆଇଲି ଅଛେ ତୁମର୍ ସଙ୍ଗେ ସୁଖ୍‌ଦୁଃଖ୍ ହେବାର୍ ଲଗି ।

ଆମର୍ ଇ ଗାଁ । ଏ ମାଉଲିମାଁ । ଧରମର୍ କାଇଁଟା ନାଇଁ ? ବଣ୍ ଅଛେ, ଡ଼ଙ୍ଗର୍ ଅଛେ, ଜମି, ନଦୀ, ଘର୍ ସବୁ ଅଛେ । ଇ ବଣ୍ ଜଙ୍ଗଲ୍, ଇ ମାଟି ଥାନେ ଆମେ ସୁନା ଫଲେଇଲୁ ନ । ମାତର୍ ଆମେ ସେ ସବୁ ଭୋଗ୍ କରିପାରୁବୁ ଅଛେ କ ?

ଆମେ ହାଡଭଙ୍ଗା କମାଇ ଅର୍ଜିଲା ଧନ୍‌କୁ କୋନ୍ ବାଟ୍‌ଲେ ରଜାଘର ପାଇକ୍ ମନ୍ ଅସି ସବୁଯାକ ଜୁର୍ ନେଲେଇନ । ଆଉର୍ ମିଶା

ମାର୍‌ପିଟ୍‌ କାର୍‌ବାଇ ଆଚର୍‌ । ଇଟା ତମ୍‌କେ ଭଲ୍‌ ଲଗ୍‌ସି ଆଚେ କ ?"

["ମୁଁ ଚେନ୍ନାଇଗୁମ୍ଫାରୁ ଦଶ କୋଶ ଡ଼େଇଁ ତୁମମାନଙ୍କ ସଙ୍ଗେ ସୁଖଦୁଃଖ ହେବା ପାଇଁ ଏଠାକୁ ଆସିଛି ।

ଆମର ଏଇ ଗାଁରେ ମାଉଳି ମା'ଙ୍କ (ଗ୍ରାମଦେବତୀଙ୍କ ସ୍ଥାନୀୟ ନାମ) ଧର୍ମରୁ କଣ ନାହିଁ । ବଣ ଅଛି, ପାହାଡ ଅଛି, ଜମି ନଦୀ ଘର ସବୁ ଅଛି । ଏହି ବଣଜଙ୍ଗଲ, ଏହି ମାଟିରେ ଆମେ ସୁନା ଫଳାଉଛୁ । ମାତ୍ର ଆମେ ସେ ସବୁ ଭୋଗ କରି ପାରୁଛେ କି ? ]

ଆମେ ହାଡଭଙ୍ଗା ପରିଶ୍ରମ କରି ଅର୍ଜିଲା ଧନକୁ କେଉଁଆଡ଼ୁ ରଜାର ପାଇକମାନେ ଆସି ବଳାତ୍କାର କରି ନେଇ ଯାଉଛନ୍ତି । ତା ସଙ୍ଗେ ସଙ୍ଗେ ମାଡ଼ପିଟ ମଧ୍ୟ କରୁଛନ୍ତି । ତୁମକୁ ଏହା ଭଲ ଲାଗୁଛି କି ?"]

ଆପଣା ଅଙ୍ଗେ ନଭୋଗଥିବା ଅତ୍ୟାଚାର ଓ ଯାତନା କାହାକୁ ବା ସୁଖ ଲାଗିବ ? କିନ୍ତୁ ପରମ୍ପରା, ଅନ୍ଧବିଶ୍ୱାସ ଓ ପୋଲିସ୍‌ର ଗୁଳିନଳୀକୁ ଡ଼ରି ଲୋକମାନେ ପାଟି ଫିଟାନ୍ତି ନାହିଁ । କେହି ବା କିଛି କହୁ କହୁ ମଝି ବାକ୍ୟରେ ଅଟକି ଯାଏ । କେତେକ ଯୁବକ ଅବା କହି ପକାନ୍ତି, 'ଏଇଟା ସତ ଯେ, ଆମେ କହିଲେ ମଲୁ, ନ କହିଲେ ମଲୁ ।' ତା ପରେ ପାଟି ଆପା ଆପି ହୋଇଯାଏ । ଶ୍ରୋତାଙ୍କର ଏଇ କାଳ କାଳରୁ ଚଳି ଆସୁଥିବା ଡ଼ରୁଆ ମନୋବୃତ୍ତିକୁ ଲକ୍ଷ୍ମଣ ଜାଣନ୍ତି । ତେଣୁ ସେ ଲୋକଙ୍କୁ ସାହସ ଦେଇ ଡ଼ର ଛଡ଼ାଇବାକୁ ଚେଷ୍ଟା କରନ୍ତି । ନଚେତ୍ ଆଲୋଚନା ସେଇଠି ହିଁ ଶେଷ ହୋଇଯିବ ।

ଡ଼ରିଲୁସ୍‌ କ ହୋ ଭାଇ । ମନ ଥାନେ ଯୋନ୍‌ଟାରିଲା ତା'କେ ଗଟ୍ କରି କହ । ନ କଇଲେ ସବୁଦିନେ ଇମିତ ଦୁଃଖ୍‌ ପଡ ପଡ଼ ମରିଯିବୁ ବେ । ଆମର ପିଲାମନ୍‌ ମିଶା ଦୁଃଖ୍‌ ପାଇବେ ତାରି ଲାଗି ଇ ଥାନେ ଏକା ଗୋଟେକ୍‌ ବାଟ୍‌ କାଢ଼ୁ ବେ ।"

[ ଓରଲୁ କ ହୋ ଭାଇ ! ମନରେ ଯାହା ଅଛି ତାହା ବଡ଼ ପାଟିରେ କହ । ନ କହିଲେ ସବୁଦିନ ଏମିତି ଦୁଃଖ ପଡ଼ି ପଡ଼ି ମରିଯିବା । ଆମର ପିଲାପିଲି ମଧ୍ୟ ଦୁଃଖ ପାଇବେ । ତେଣୁ ତାର ସମାଧାନ ପାଇଁ ଏବେ ଏଠାରେ କେବଳ ଗୋଟିଏ ରାସ୍ତା ବାହାର କରିବା ।।

ଏଇଠି ମଧ୍ୟ ଲକ୍ଷ୍ମଣ ଜାଣନ୍ତି ଯେ ଭୟ ଯୋଗୁଁ ଜଣାଥିଲେ ମଧ୍ୟ କେହି ରାଜା ବିରୁଦ୍ଧରେ କହିବେ ନାହିଁ । ତା ସଂଗେ ସଂଗେ ଗ୍ରାମବାସୀମାନେ ଜାଣନ୍ତି ଲକ୍ଷ୍ମଣ ଲେଖାପଢ଼ା ଜାଣେ, ଅନେକ ଗାଁ ଓ ସହର ବୁଲିଛି, ବଡ଼ ଲୋକଙ୍କ ସଙ୍ଗେ ଚଳପ୍ରଚଳ ହେଉଛି । ତେଣୁ ସମସ୍ତେ ତାଙ୍କୁ ହିଁ ଅନୁରୋଧ କରନ୍ତି କିଛି ଉପାୟ ଜାଣିଥିଲେ ସେ କହନ୍ତୁ । ଏଠାରେ ଲକ୍ଷ୍ମଣ ତାଙ୍କର ଅସଲ ବକ୍ତବ୍ୟଟି ପ୍ରକାଶ କରନ୍ତି କିନ୍ତୁ ସେ ଏପରି ଗାନ୍ଧୀଙ୍କ ଉକ୍ତି ଉପସ୍ଥାପନ କରନ୍ତି ଯେ ଜଣାପଡ଼େ ସତେ ଯେପରି ସେଥିରେ କିଛି ହିଁ ନୂତନତା ନାହିଁ ସବୁ ଜଣେ ଶୁଣା କଥା ।

'ମୁଁଇ ଆର କାଇଟା ତମର୍ ଲେ ବେଶି ଜାଣିଲ କାଇ ? ହେଲେ ଭାଇମନ୍ ଗୋଟେକ୍ କ କଥା । ଇ ଯୁ ଗାରଡ୍ କ ରଜନ ଯୋନ୍ ଆଇସି ଆଚେ, ହାର ଆମର୍ ଲେ ବେଶି ବପୁ କ ? ହେଲେ ଆମେ କାଇକାଜେ ତା'କେ ଡର୍ ବୁ ? କାରଣ୍ ସେ ରଜାର୍ ଲୋକ୍ । ରଜା ହୋଇସି ଆଚେ ସାଇବର୍ ଲୋକ୍ । ତାଙ୍କର ପାଖେ ଆଚେ ନଳୀ, ଗୁଳ, ବୋମ୍ । ତେବେ ଆମେ ଇ ଦୁଇ ଲୋକ୍ କେ ରଜା ଆଜର ସାହେବ୍ କୁ ଛାଡ଼୍ ଲେ ଆମ୍ କେ କେ ଆଡ଼ର ନାଇଁ ଡରଇ ପାର୍ ବେ । ଇ କଥା ମୁଇଁ ନାଇଁ ଯେ ଆମର ଦେଶ୍ ର ବଡ଼ ଲୋକ୍ ଗାନ୍ଧୀ ମାପ୍ରୁ ମିଶା ସଙ୍ଗ୍ ଲାଏ ।

ଗାନ୍ଧୀ ମହାପ୍ରୁ କଇଲା, ଗାଁ ଗାଁର ଆମର୍ ଲୋକ୍ ସରକାର କଥା ନା ଶୁଣା । ଯାନୁ ନାଇ ଖଜା । ବେଠି, ଗଡ଼ମ୍ ନାଇଁ କରା । ଗୋଟେକ୍ କ ଲୋକ ନାଇ ଦେଲେ ସିନା ହଡ଼୍ ବାଏ, ପିଟ୍ ବାଏ, ମାତର୍ ସବୁ ଲୋକ୍ ନା କଲେ ତା ମନ୍ କେ ହାଇବ ମନ ଆମର ଦେଶ୍ ଛାଡ଼୍ ଦେବେ ! ଇଟା ତମର୍ ମନ୍ କେ ପାଇଲା କି ?"

[ ମୁଁ କ'ଣ ତୁମଠୁ ବେଶି ଜାଣିଛି ? କିନ୍ତୁ ଭାଇମାନେ, ଗୋଟିଏ କଥା । ଏହି ଯେଉଁ ଗର୍ଡ଼ିକ ରେଭେନ୍ୟୁ ଇନସପେକ୍‌ଟର ଆସେ ତାର କଣ ଆମଠୁ ବେଶି ବଳ ? ତଥାପି ଆମେ କାହିଁକି ତାକୁ ଡରୁ ? ତାର କାରଣ ହେଲା ସେ ରଜାର ଲୋକ । ରଜା ଇଂରେଜ ସରକାରଙ୍କ ଅଧୀନ । ସେମାନଙ୍କ ପାଖେ ଅଛି ନଳୀ, ଗୁଳି, ବୋମ୍‌ ଇତ୍ୟାଦି । ସେଥିପାଇଁ ଆମେ ଏହି ରଜା ଏବଂ ସାହେବଙ୍କୁ ଅସହଯୋଗ କଲେ କେହି ଆଉ ଡରାଇ ପାରିବେ ନାହିଁ । ଏ କଥା କେବଳ ମୁଁ କହୁ ନାହିଁ, ଏ ଦେଶର ଜଣେ ବଡ଼ ଲୋକ ଗାନ୍ଧୀ ମହାତ୍ମା ମଧ କହୁଛନ୍ତି ।

ଗାନ୍ଧୀ ମହାପ୍ରଭୁ କହୁଛନ୍ତି ଲୋକେ ସରକାର କଥା ଶୁଣନ୍ତୁ ନାହିଁ । କର ଦିଅନ୍ତୁ ନାହିଁ । ବେଠି ଗଡ଼ମ କରନ୍ତୁ ନାହିଁ । ଜଣେ ଲୋକ ଏପରି କଲେ ସିନା ପୁଲିସ୍‌ ଗାଳିଦେବ, ମାଡ଼ ମାରିବ ମାତ୍ର ସମସ୍ତେ ଏପରି କଲେ ଆପେ ସାହେବମାନେ ଆମ ଦେଶ ଛାଡ଼ି ଗୁଲିଯିବେ । ଏ କଥା ତୁମ ମନକୁ ପାଉଛି କି ନାହିଁ ? ]

ସମସ୍ତେ ମନ ଭିତରେ ଏ ପ୍ରସ୍ତାବକୁ ସ୍ୱୀକୃତି ଦିଅନ୍ତି କିନ୍ତୁ ମୁହଁପରେ କେହି ପାଟି ଫିଟାଇ ହଁ କରିବାକୁ ସାହସ କରନ୍ତି ନାହିଁ । ହଁ, ନାହିଁ ଏ ଭିତରେ ସେମାନଙ୍କ ମନ ଦୋହଲେ । ଏଠାରେ ଆଉ ଥରେ ଲକ୍ଷ୍ମଣ ନ ଡ଼ରିବାକୁ ଆହ୍ୱାନ ଦିଅନ୍ତି । ସେ କହନ୍ତି ଯେ ଏଇ ଗୋଟିଏ ଗାଁ କଣ, ରାଜ୍ୟସାରା ହଜାର ହଜାର ଲକ୍ଷ ଲକ୍ଷ ଗ୍ରାମରେ ଲୋକେ ସାହେବମାନଙ୍କୁ ତଡ଼ିବାକୁ ଅଣ୍ଟା ଭିଡ଼ିଲେଣି, ଡାଣ୍ଡିକୁ ବାହାରି ପଡ଼ିଲେଣି ! ତେଣୁ ସେମାନେ ଏ ସଂଗ୍ରାମରେ ଏକୁଟିଆ ନୁହନ୍ତି । ଜନତା ପାଖରେ ଦୁଇ ଗୁଣିଆ ପୋଲିସ୍‌ର ବା ବଳ କେତେ । ଡରିଲେ ସେମାନେ ଆହୁରି ଡ଼ରାଇବେ, ଆହୁରି ଜୁଲୁମ୍‌ କରିବେ । ସମସ୍ତେ ଏକାଥରକେ ତାଙ୍କୁ ଅମାନ୍ୟ କଲେ, ସେମାନେ ନିଜେ ଡରିମରି ପଳାଇବେ । କ୍ରମେ କ୍ରମେ ଶ୍ରୋତାଙ୍କ ମନରେ ସାହସ କୁଳାଏ, ଉତ୍ତେଜନା ବଢ଼େ ଏବଂ ସେମାନେ ଏକ ସ୍ୱରରେ ଲକ୍ଷ୍ମଣଙ୍କ କଥାରେ ସମ୍ମତ ହୁଅନ୍ତି । ଭାରତର ଲକ୍ଷ ଲକ୍ଷ ସ୍ୱାଧୀନତା ସଂଗ୍ରାମୀଙ୍କ

ସହିତ ସାମିଲ୍ ହେବା ପାଇଁ କଂଗ୍ରେସ ଅନୁଷ୍ଠାନରେ ଯୋଗ ଦିଅନ୍ତି ।

ତା ପରେ ଲକ୍ଷ୍ମଣ ନାୟକ ଗ୍ରାମବାସୀଙ୍କୁ ପ୍ରତିଦିନ ଯାହା କରିବାକୁ ହେବ ସେ ସବୁ ବୁଝାନ୍ତି । ସେ କହନ୍ତି ଯେ ମଦ ଖାଇବା ଅନୁଚିତ । ମଦ ନ ଖାଇବାକୁ ଗାଁର ଅନ୍ୟମାନଙ୍କୁ ମଧ୍ୟ କହିବ । କାହାକୁ ହିଂସା କରିବ ନାହିଁ । ଆପଣା ଭିତରେ ମାଡ଼ଗୋଳ ଲଗିବ ନାହିଁ । ସତ କହିବାକୁ ହଉନ୍ତ ସମୟରେ କଂଗ୍ରେସ ଯେଉଁ ଆଦେଶମାନ ଦେବ ତାକୁ ମାନି ଚଳିବ ।

ଭୋର ସକାଳୁ କୁକୁଡ଼ା ଡାକିଲାବେଳେ ଉଠିବ । ଗାଧୁଆ ପାଧୁଆ ସାରି ଅଳ୍ପ ଗେଞ୍ଜି ଖାଇବ । ଘଣ୍ଟେ ଦୁଇ ଘଣ୍ଟା ସୂତା କାଟିବ । ତା ପରେ ଯେ ଯାହାର ଗୃହ କାର୍ଯ୍ୟରେ ମନୋନିବେଶ କରିବ । ଏ ସବୁ ତୁମମାନଙ୍କର ଉପକାର ପାଇଁ ।

ତା ପରେ ଲକ୍ଷ୍ମଣ ତାଙ୍କର ଶେଷୋକ୍ତି ପ୍ରକାଶ କରନ୍ତି, "ତୁମେ ଇ ସବୁ କାମ କର୍‌ବୁ ବୋଲି ମାଉଲି ମା' ପାଖେ ପର୍‌ମାଣ କର୍‌ବାକେ ପଡ଼ସି ।

[ ତୁମ୍ଭେମାନେ ଏ ସବୁ କାମ କରିବ ବୋଲି ମାଉଲି ମା'ଙ୍କ ପାଖେ ପ୍ରମାଣ କରିବାକୁ ହେବ । ]

ସେହି ସଭାରେ ହିଁ ସମସ୍ତେ ଗୋଟି ଗୋଟି ହୋଇ ଗ୍ରାମ ଦେବତାଙ୍କ ନାମରେ ପ୍ରମାଣ କରି କଂଗ୍ରେସ ଦଳଭୁକ୍ତ ହୁଅନ୍ତି । ତା ପରେ ନାଚ ଗୀତ ଚାଲେ । ସେ ଦିନଟି ଏକ ପର୍ବ ଦିନରେ ପରିଣତ ହୁଏ । କେତେକ ଗ୍ରାମରେ ଲୋକେ ଭେଦା କରି ଭୋଜ କରନ୍ତି । ଗାଁ ଯାକର ଲୋକ ଏକାଠି ବସି ଖାଆନ୍ତି ।

ଏ ସବୁ କଥୋପକଥନରୁ ଲକ୍ଷ୍ୟ କରିବାର କଥା ଯେ ଲକ୍ଷ୍ମଣ ଲୋକଙ୍କ ମନରୁ ଭୟ ଛଡ଼ାଇବାକୁ ଚେଷ୍ଟା କରୁଥିଲେ । ସ୍ୱାଧୀନତା ସଂଗ୍ରାମରେ

ସେମାନେ ଯେ ଏକାକୀ ନୁହନ୍ତି ସେ କଥା କହି ତ୍ରିତରେ ବଳ ଦେଉଥିଲେ । କିନ୍ତୁ ପ୍ରଧାନ କଥା ହେଉଛି ସେ ବୁଝାଇଲାବେଳେ ଧର୍ମର ସାହାଯ୍ୟ ନେଉଥିଲେ, ମାଉଳି ମା'ଙ୍କ ନାମ ଏକାଧିକ ଥର ଭୂଷଣରେ ଧରି । ଏହାର କାରଣ ହେଉଛି ଆଦିବାସୀ ଧର୍ମକୁ ବେଶି ମାନେ ।

ଜଣେ ଲୋକକୁ ବ୍ୟକ୍ତିଗତ ଭାବେ ସ୍ୱାଧୀନତା ଆନ୍ଦୋଳନ ବିଷୟରେ ବୁଝାଇଲା ବେଳେ ସେ ଥଟ୍ଟା ଓ ହାସ୍ୟରସର ଅବତାରଣା କରିଥାନ୍ତି । ଯଥା — ତୁମେ ଜେଲ୍ ଗଲେ ତୁମ ସ୍ତ୍ରୀ ଅନ୍ୟ କାହା ପାଖକୁ ଗୁଳି ଯାଇପାରେ । ସେ ଦୁଃଖ ସହି ପାରିବ ତ ?

କିନ୍ତୁ ଗୋଟିଏ ସମାବେଶରେ କଥା କହିଲାବେଳେ ସେ ଗମ୍ଭୀର ହୋଇଯାନ୍ତି । ଦୁଃଖ ଦୁର୍ଦ୍ଦଶା ବର୍ଣ୍ଣନା କଲାବେଳେ ସେ ବାଷ୍ପ ଗଦ୍‌ଗଦ୍ ହୋଇଯାନ୍ତି ।

କେବଳ ଭାଷଣରେ ନୁହେଁ, ସମୟ ଆସିଲା ଯେତେବେଳେ ଲକ୍ଷ୍ମଣ ଆପଣାର ମୁଣ୍ଡାହାର କାମରେ ଖିଲାପ କରି ଲୋକଙ୍କୁ ଶିସ୍ତ ନ ଦେବାକୁ ମତାଇଲେ । ଗ୍ରାମବାସୀମାନେ ପ୍ରଥମେ ପ୍ରଥମେ ଶବନ ଉପରେ କାକୁସ୍ଥ ହେଲେ । ଡରିଲେ, କାଳେ ରଜା ଜମି ନେଇ ଯାଇପାରେ । କିନ୍ତୁ ପରେ ଲକ୍ଷ୍ମଣ ନାୟକଙ୍କ ସହିତ ହାତ ମିଳାଇଲେ । ତେନ୍ତୁଳିଗୁମ୍ମାକୁ ଦେଖାଦେଖି ବାନ୍ଧନା ଗ୍ରାମରେ ଲୋକେ କର ଦେବା ବନ୍ଦ କରିଦେଲେ । ରେଭେନ୍ୟୁ ଇନ୍‌ସପେକ୍ଟରମାନେ ଆସନ୍ତି । କେହି ଦେଲା ତ ଦେଲା ନ ଦେଲା ତ ନାହିଁ । ଯେଉଁମାନେ ଦିଅନ୍ତି, ସେମାନେ ରଜାକୁ ଡରିକରି ଦେବାକୁ ବାଧ୍ୟ ହୁଅନ୍ତି । ଏଥିରେ ଅନ୍ୟ କେହି ତା ପ୍ରତି ରୁଷ୍ଟ ହୁଅନ୍ତି ନାହିଁ । ସେହିପରି ବେଠିଆ ଓ ଗଉ୍‌ମ ସିଧା ମନା କରି ଦିଆଯାଉଥିଲା ।

ପୋଲିସ୍, ଗାର୍ଡ ଆଦି କର୍ମଚାରୀମାନେ କ୍ରମେ ଗାଁ ଗାଁରେ ଅପମାନିତ ହେବାକୁ ଲାଗିଲେ । ପୂର୍ବର ପ୍ରତିପତ୍ତି ଆଉ ରହିଲା ନାହିଁ । ତେଣୁ ସେମାନେ ମଧ୍ୟ ଲୋକଙ୍କ ଉପରେ ଦାଉ ସାଧିବାକୁ ଆରମ୍ଭ କଲେ ।

ଗାଁ ଗାଁରେ ପୋଲିସ୍‌ର ଇଚ୍ଛା ଅନୁସାରେ ତାଙ୍କୁ ଯେଉଁମାନେ ଖବର କରୁ ନଥିଲେ ସେମାନଙ୍କର ନାଁରେ ମିଥ୍ୟା କେଶମାନ ଦାଏର୍ ହେଲା । କେତେକ ସ୍ଥାନରେ ମାରଧର ବି ଚାଲିଲା । କେତେ ଲୋକଙ୍କଠୁ ଜମି ଛଡ଼ାଇ ନିଆଗଲା । କେତେକଙ୍କ ଘର ଖାନ୍ ତଲାସ ହେଲା ।

କିନ୍ତୁ ଏ ସବୁଦ୍ୱାରା ଲୋକେ ଦବିଗଲେ ନାହିଁ । ବରଂ ଅନେକ କୌତୁହଳୋଦ୍ଦୀପକ ଘଟଣାମାନ ଘଟିବାରେ ଲାଗିଲେ । କେହି ସରକାରୀ କର୍ମଚାରୀ ଗାଁକୁ ଆସିବା ଶୁଣାଗଲେ ଗାଁଟା ଯାକର ଲୋକ ଗାଁ ଛାଡ଼ି ଚାଲିଯାଉଥିଲେ । କେହି କିଛି ବିକ୍ରି କରିବାକୁ ମନା କରି ଦେଉଥିଲେ । ବୋଲ କରିବାକୁ କେହି ନାହିଁ, କାଉଡ଼ି ବୋହିବାକୁ କେହି ନାହିଁ । ସମଗ୍ର ଅଞ୍ଚଳଟି ଏତେ ଦୁର୍ଗମ ଯେ କାଉଡ଼ି ବିନା କର୍ମଚାରୀ ମୋଟେ ଚାଲିପାରିବେ ନାହିଁ । କର୍ମଚାରୀମାନେ ଗାଁଗଣ୍ଡାକୁ ଗଲେ ତାଙ୍କୁ ଲାଗିଲା, ଗ୍ରାମରେ ଲୋକେ ଅଛନ୍ତି କିନ୍ତୁ ସେମାନଙ୍କର ବୋଲ କରିବାକୁ କେହି ଜଣେ ନାହିଁ । ଏପରିକି ତାର ବୋଲକରା ଗାଁର ନାୟକ ମଧ୍ୟ ଆଜି ଲୋକଙ୍କ ପଟିଆ ।

ଲକ୍ଷ୍ମଣ ଗାଁ ଗାଁକୁ ଯାଇ ଲୋକମାନଙ୍କୁ ଏହି ଅସହଯୋଗ ଆନ୍ଦୋଳନକୁ ତେଜେଇବାରେ ଲାଗିଥାନ୍ତି । ପୂର୍ବପରି କେହି ଜେଲ୍‌କୁ ଗଲେ ବା କାହାର ଜମି ଚାଲିଗଲେ ତାର କୁଟୁମ୍ବର ଭରଣପୋଷଣ ଦାୟିତ୍ୱ ନେଉ ନଥାନ୍ତି । ପାଖତଡ଼ ଅନେକ ଗ୍ରାମର ନାୟକ ଲକ୍ଷ୍ମଣଙ୍କ ଆଦର୍ଶରେ ଅନୁପ୍ରାଣିତ ହେବାରୁ ଏ କାର୍ଯ୍ୟକ୍ରମ ଖୁବ୍ କ୍ଷିପ୍ରବେଗରେ ବ୍ୟାପିଲା ।

କେତେକ ଗ୍ରାମରେ ଏ କାର୍ଯ୍ୟକ୍ରମମାନ ସଫଳ ହେବାରୁ ଲକ୍ଷ୍ମଣଙ୍କ ପ୍ରଭାବ ଖୁବ୍ ବଢ଼ିଗଲା । କିନ୍ତୁ ସରକାରୀ ମହଲରେ ଓ ରାଜାଙ୍କ ଦରବାରରେ ତାଙ୍କ ବିରୁଦ୍ଧରେ ଅନେକ ତଥ୍ୟ ଆଗତ ହେଲା । ସେ ରାଜଦ୍ରୋହୀ ବା ଫିତୁରଦାର୍ ବୋଲି ଘୋଷିତ ହେଲା । ଫିତୁରଦାର୍‌ର ଅର୍ଥ ହେଉଛି ରାଜା ବିରୁଦ୍ଧରେ କରୁଥିବା ମେଳିର ସର୍ଦ୍ଦାର ।

ଲକ୍ଷ୍ମଣ ସଚେତନ ହେଲେ ନାହିଁ । ଫିରୁଙ୍ଗିଦାର୍ ଭାବେ ଘୋଷିତ ହେଲା ପରେ ତାଙ୍କର ପ୍ରତିପତ୍ତି ଗାଁ ଗାଁରେ ବଢ଼ିଗଲା ଏବଂ କଂଗ୍ରେସ ଅନୁଷ୍ଠାନରେ ତାଙ୍କର ସମ୍ମାନ ବଢ଼ିଗଲା ।

ସେ ଏକ ବିପ୍ଲବୀ ବୀରଭାବେ ଖ୍ୟାତ ହେଲେ ।

କିନ୍ତୁ ତା ପାଇଁ ତାଙ୍କୁ ଅନେକ କିଛି ସୁଖ ସୁବିଧା ତ୍ୟାଗ କରିବାକୁ ପଡ଼ିଥିଲା । ତାଙ୍କଠୁ ନାୟକତ୍ୱ କାଢ଼ି ନିଆଗଲା । ମାତ୍ର କୋଡ଼ିଏ ଏକର ଜମିକୁ ଛାଡ଼ି ବଳକା ସମସ୍ତ ଜମି ହରାଇବାକୁ ପଡ଼ିଲା । ବର୍ତ୍ତମାନ ସେ ଜଣେ ସାମାନ୍ୟ ଗ୍ରାମବାସୀ । ଏଡ଼େ ବଡ଼ ବିରାଟ କୁଟୁମ୍ବ କୋଡ଼ିଏ ଏକର ଜମିରେ ଗୁଜୁରାଣ ମେଣ୍ଟାଇବା କଷ୍ଟ ସାଧ୍ୟ ହୋଇପଡ଼ିଲା । ତଥାପି ଲକ୍ଷ୍ମଣ ଧୈର୍ଯ୍ୟ ହରାଇ ନଥିଲେ ।



# ଏଗାର

୧୯୩୯ରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଲା । ବ୍ରିଟେନ ଯୁଦ୍ଧରେ ପ୍ରତ୍ୟକ୍ଷଭାବେ ଜଡ଼ିତ ହେଲା । ଏଣେ ତାର ବିରୋଧୀ ଜାପାନ ଏସିଆର ଅନେକ ଅଞ୍ଚଳ ଦଖଲ କରିବାରେ ଲାଗିଥାଏ । ଭାରତ ବ୍ରିଟିଶ ଶାସନାଧୀନ । ତେଣୁ ଇଂରେଜମାନେ ଭାରତକୁ ତାଙ୍କ ପକ୍ଷଭୁକ୍ତ କରି ଯୁଦ୍ଧରେ ଜଡ଼ିତ କଲେ । ସେତେବେଳକୁ କଂଗ୍ରେସର ଭିତ୍ତିଭୂମି ଖୁବ୍ ଦୃଢ଼ ହୋଇ ସାରିଥାଏ । ତେଣୁ ଇଂରେଜ ସରକାର ଚାହିଁଲେ ଯେ କଂଗ୍ରେସ ତାଙ୍କୁ ଯୁଦ୍ଧରେ ସାହାଯ୍ୟ କରୁ । କିନ୍ତୁ କଂଗ୍ରେସ ଖୋଲ୍ ଖୋଲ୍ ଭାବେ ଘୋଷଣା କଲା କି ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ଦେଲେ ଯାଇ ସେ ଯୁଦ୍ଧରେ ଯୋଗ ଦେବ । ବ୍ରିଟିଶ୍ ସରକାର ଏଥିରେ ମଙ୍ଗିଲେ ନାହିଁ ।

ମହାଯୁଦ୍ଧ । ପୃଥିବୀ ସାରା ଆଲୋଡ଼ନ । ଏଣେ ସ୍ୱାଧୀନତାକାଂକ୍ଷୀ ଭାରତୀୟମାନେ ହତାଶାରେ ବୁଡ଼ି ରହିଲେ । ସ୍ଥିର ହେଲା ଯେ ସ୍ୱରାଜ ପାଇଁ ଦାବୀ ଜଣାଇ ନେତା ଓ କର୍ମୀମାନେ ବିଭିନ୍ନ ସ୍ଥାନରେ ବ୍ୟକ୍ତିଗତ ସତ୍ୟାଗ୍ରହ କରିବେ ।

କୋରାପୁଟ ଜିଲ୍ଲାରେ ମଧ୍ୟ ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ତାଲିକା ପ୍ରସ୍ତୁତ ହେଲା । ସେମାନଙ୍କ ଭିତରୁ ଜୟପୁରର ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ, ଶ୍ରୀ ରାଧାମୋହନ ସାହୁ, ଶ୍ରୀ ନୀଳକଣ୍ଠ ପାଢ଼ୀ, ନବରଙ୍ଗପୁରର ଶ୍ରୀ ସଦାଶିବ ତ୍ରିପାଠୀ, ଶ୍ରୀ ସଦାନନ୍ଦ ମହାନ୍ତି, ଶ୍ରୀ ଲକ୍ଷ୍ମୀଚନ୍ଦ୍ର ଦାସ,

କୋଟପାଡର ଶ୍ରୀ ସୂର୍ଯ୍ୟନାରାୟଣ ମାଝୀ, ଶ୍ରୀ କପିଳ ସାହ ଇତ୍ୟାଦି ଉଲ୍ଲେଖଯୋଗ୍ୟ । ଶ୍ରୀ ଲକ୍ଷ୍ମଣ ନାୟକଙ୍କୁ ମାଥିଲି ଅଞ୍ଚଳର ନେତା ଭାବେ ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ମନୋନୀତ କରାଗଲା ।

ସତ୍ୟାଗ୍ରହ ଚାଲିଲା । ମାଥିଲିଠାରେ ସତ୍ୟାଗ୍ରହ କରି ଲକ୍ଷ୍ମଣ ନାୟକ ଜେଲ୍ ବରଣ କଲେ ।

ସେହିପରି ଜିଲ୍ଲାର ବିଭିନ୍ନ ସ୍ଥାନରୁ କର୍ମୀମାନେ ବନ୍ଦୀ ହୋଇ କୋରାପୁଟ ଜେଲ୍‌କୁ ପ୍ରେରିତ ହେଲେ । ଏତେ ଲୋକ ଜେଲ୍ ଗଲେ ଯେ ଜେଲ୍ ଗୃହଟି ଭର୍ତ୍ତି ହୋଇଗଲା । ଅସ୍ୱାସ୍ଥ୍ୟକର ପରିସ୍ଥିତି । କର୍ମୀମାନେ ରୋଗାକ୍ରାନ୍ତ ହେଲେ । କାଳୁ କୁଣ୍ଡିଆ ବ୍ୟାପିଲା । ଏତେ ଅସ୍ୱାସ୍ଥ୍ୟକର ପରିସ୍ଥିତି ଯେ କେତେ ଜଣ ମୃତ୍ୟୁବରଣ କଲେ । ଜୟପୁରରେ ଶ୍ରୀ ସଦାଶିବ ବେହେରା ସେମାନଙ୍କ ଭିତରୁ ଅନ୍ୟତମ । ଚାରି ପାଞ୍ଚ ମାସ ଜେଲଦଣ୍ଡ ପରେ ସମସ୍ତେ ଗୋଟି ଗୋଟି ହୋଇ ଖଲାସ ହେଲେ ।

ତା ପରେ ସ୍ୱାଧୀନତା ଆନ୍ଦୋଳନ କ୍ଷିପ୍ର ବେଗରେ ବ୍ୟାପିଲା । ଲୋକେ କ୍ରମେ ଆତ୍ମସଚେତନ ହୋଇ ଉଠୁଥାନ୍ତି । ସରକାରଙ୍କ ସହିତ ଅସହଯୋଗ କରି ସବୁ ପ୍ରକାର ଟିକସ ଦେବା ବନ୍ଦ କରି ଦେଉଥାନ୍ତି । ଗ୍ରାମେ ଗ୍ରାମେ କଂଗ୍ରେସର ଏକତାର ବଳ ବଢ଼ୁଥାଏ । ତେଣେ ପୋଲିସର ଦମନଲୀଳା ବି ବଢ଼ିବାରେ ଲାଗୁଥାଏ ।

ଅହିଂସା ବାଣୀ ଯେତେ ପ୍ରଚାରିତ କଲେ ମଧ୍ୟ ପୋଲିସ୍ ଦମନଲୀଳାର ପ୍ରକୋପ ଏତେ ବଢ଼ିଗଲା ଯେ ଅନେକ ସ୍ଥାନରେ ଲୋକେ ହିଂସାର ପ୍ରତିଦାନ ହିଂସାରେ ଦେବାର ଘଟଣାମାନ ଶୁଣାଗଲା । ଉଦାହରଣ ସ୍ୱରୂପ କାଶୀପୁର ଅଞ୍ଚଳରେ ଜଣେ ପଟୁଆରି (ଅମୀନ) ଗ୍ରାମବାସୀଙ୍କୁ ଜୁଲୁମ କଲା । ସବୁବେଳେ ଲୋକଙ୍କ ଦ୍ୱାରା ସବାରିରେ ବୁହା ହୋଇ ବୁଲିଲା । ଲୋକେ ଅତିଷ୍ଠ ହୋଇ ପଡ଼ିଲେ । ଦିନେ ରାତିରେ ଭରୁଆମାନେ ତାକୁ ଗମ୍ଭୀର ଝୋଲା ଭିତରେ ନିକ୍ଷେପ କଲେ । ତାର ଆଉ ପତ୍ତା ମିଳିଲା ନାହିଁ ।

ନନ୍ଦପୁର ଥାନାର ଜଣେ ରସ୍ୟତକୁ ଗୋଟିଏ ହାଟରେ ସ୍ଥାନୀୟ ଅମୀନ ଖଜଣା ଅସୁଲ ବାହାନାରେ ଜବରଦ୍ସ୍ତି ମାରି କଲା । ରୟତର ମୁଣ୍ଡ ଫାଟିଲା । ବେଶି ମାଡ଼ ସହି ନ ପାରି ସେ ମଧ୍ୟ ଉତ୍ତ୍ୟକ୍ତ ହୋଇ ଗୋଟିଏ ଠେଙ୍ଗାରେ ଅମୀନର ମୁଣ୍ଡ ଫଟାଇ ଦେଲା ।

ଏ ସବୁ ସ୍ଥାନ ତୁଳନାରେ ମାଲକାନଗିରି ଅଞ୍ଚଳରେ ପୋଲିସ୍ ଓ ଅମୀନଙ୍କ ଅତ୍ୟାଚାର ବହୁଗୁଣରେ ବଢ଼ିଯାଇଥିଲେ ମଧ୍ୟ ସେଠାରେ ଗୋଟିଏ ହେଲେ ହିଂସାକାଣ୍ଡ ଖବର ଶୁଣା ନଥିଲା । ମାଲକାନଗିରିର ବିସ୍ତୃତ ଅଞ୍ଚଳରେ ମହାତ୍ମା ଗାନ୍ଧୀଙ୍କ ଅହିଂସା ମନ୍ତ୍ର ଅକ୍ଷରେ ଅକ୍ଷରେ ପାଳିତ ହୋଇଥିଲା । ଏହା ଲକ୍ଷ୍ମଣ ନାୟକଙ୍କ କୃତିତ୍ୱ ବୋଲିବାକୁ ହେବ । ସେ ବନ ବନ୍ତ ଗ୍ରାମ ଗ୍ରାମ ବୁଲି ଲୋକଙ୍କୁ ହିଂସାତ୍ମକ ଉତ୍ତେଜନାରୁ କ୍ଷାନ୍ତ କରୁଥିଲେ । ମରିବାଠାରୁ ସହିପିବାର ମହତ୍ତ୍ୱ ବିଷୟରେ ଅବହିତ କରାଉଥିଲେ ।

ତଥାପି ସେତେବେଳକୁ ସେ ସ୍ପଷ୍ଟ ବୁଝିପାରିଥିଲେ ଯେ ସ୍ୱରାଜ ଆସିବା ସହଜରେ ହେବ ନାହିଁ । ସେତେବେଳେ କର୍ମୀମାନଙ୍କୁ ଉଦ୍‌ବୋଧନ ଦେଇ ସେ କହୁଥିଲେ "ଗାନ୍ଧିଜୀନେ ହୁକୁମ ଦିଆ ମର୍‌ନେ ତକ୍ ଲଢ଼େଙ୍ଗେ ହମ୍ ।" ଏ ଜୀବନରୁ ଜୀବନ ବୁଲିଯିବା ଯାଏ ସ୍ୱାଧୀନତା ଆଣିବାରେ ପବିତ୍ର କର୍ତ୍ତବ୍ୟରୁ ବିଚ୍ୟୁତ ହେବା ଉଚିତ ନୁହେଁ ।

ଦେଶେ ୟୁରୋପରେ ପୃଥିବୀ ମହାସମର ତୀବ୍ର ହୋଇ ଉଠୁଛି । ଇଂରେଜ-ମାନେ ଯୁଦ୍ଧରେ ବ୍ୟସ୍ତ । ଏତେବେଳେ କିଏ କା' କଥା ଶୁଣୁଛି ? ଏମିତି କୋଳାହଳ ଭାବେ ଆନ୍ଦୋଳନ କରି କିଛି ଫାଇଦା ନାହିଁ । ତେଣୁ କିଛି ଗୋଟାଏ ଦୃଢ଼ ପଦକ୍ଷେପ ନିଆଯିବା ଉଚିତ ହେବ ବୋଲି ସମସ୍ତେ ଉପଲବ୍‌ଧି କଲେ । ଚରମ ପଦକ୍ଷେପ ନିଆଯିବା ପାଇଁ କଂଗ୍ରେସ ତା ଉଚ୍ଚ କର୍ତ୍ତୃପକ୍ଷଙ୍କ ଉପରେ ଦାୟିତ୍ୱ ଛାଡିଦେଲେ । ପ୍ରସ୍ତାବରେ ଯଦି ଅନେକଙ୍କୁ ପ୍ରାଣଦାନ ଦେବାକୁ ପଡ଼େ ସେଥିରେ ମଧ୍ୟ ଦୁଃଖ ନାହିଁ ।

ଚରମ ପଦକ୍ଷେପ ନେବା ଆଗରୁ ଗାଁ ଗାଁରେ କଂଗ୍ରେସର ଚରମ ପ୍ରସ୍ତୁତି ଚାଲିଲା । କଂଗ୍ରେସ ଅନୁଷ୍ଠାନକୁ ଦୃଢ଼ କରିବା ପାଇଁ ଗୁପ୍ତଭାବରେ ନାନା ଖବର ଓ ନିର୍ଦ୍ଦେଶ ପ୍ରଚାରିତ ହେବାରେ ଲାଗିଲା । ସରକାର ବିରୁଦ୍ଧରେ ଏ ସବୁ ପ୍ରଚାର ମୋଟ ଉପରେ ସରକାରକୁ ମାନ ନାହିଁ । ଏଥିରେ ପୋଲିସ୍ ମଧ୍ୟ ଆଖିବୁଜି ବସିରହିଲା ନାହିଁ । ପୋଲିସ୍ ଆଖିରେ ଧୂଳି ଦେଇ କଂଗ୍ରେସ ବାର୍ତ୍ତାମାନ ପ୍ରଚାର କରିବାରେ ଅନେକ କର୍ମୀ ନାନା ନିର୍ମମ ଦଣ୍ଡକାଶ ଅନୁଭୂତି ମଧ୍ୟ ଦେଇ ଗତି କଲେ । ସ୍ୱାଧୀନତାର ନାଁ ଧରିବା ଅର୍ଥ ଜୀବନକୁ ପାଣି ଛଡ଼େଇବା ।

ସେକାଳର ଲୋକେ କହନ୍ତି ସେତେବେଳେ ପୋଲିସ୍ ହାତରେ ଧରା ପଡ଼ିଲେ ଅତ୍ୟାଚାରର ସୀମା ରହେ ନାହିଁ । ଯାହା ଶୁଣା ହୁଏ, ସେ ସବୁ ଅତ୍ୟାଚାର କାହାଣୀ ବର୍ଣ୍ଣନାତୀତ । କହନ୍ତି ପାଟି ଭିତରେ ବାଡ଼ି ଭର୍ତ୍ତି କରି ପୋଲିସ୍ ତା ଭିତରେ ମୁତନ୍ତି । ନାଲି ଟହ ଟହ ତତଲା ଲୁହା ଉପର ଚଢ଼ାଇ ଦିଆଯାଏ । ଗୁପ୍ତ ଖବର ପ୍ରକାଶ ନ କଲେ ଏପରି ବହୁ ଦଣ୍ଡରେ କାହାର କାହାର ନାକ, କାନ, ଆଙ୍ଗୁଠି ପରି ଗୋଟିଏ ଗୋଟିଏ ଅଂଶ କାଟି ଦିଆଯାଏ । କେତେକ କ୍ଷେତ୍ରରେ ନିଜ ସାମନାରେ ଆପଣାର ସ୍ତ୍ରୀ ଉପରେ ପାଶବିକ ଅତ୍ୟାଚାର ମଧ୍ୟ କରାଯାଉଥିଲା ।

ବଡ଼ ଆଶ୍ଚର୍ଯ୍ୟଜନକ, ଲଜ୍ଜାଜନକ ଏବଂ ଭୟାବହ ହେଲେ ମଧ୍ୟ ଏପରି ଅନେକ ଘଟଣା କୋରାପୁଟର ଅନେକ ସ୍ଥାନରେ ଘଟିଥିଲା ବୋଲି ଲୋକେ କହିଥାନ୍ତି । ତାର ଭୁକ୍ତଭୋଗୀମାନେ ଏବେ ମଧ୍ୟ ବଞ୍ଚିଛନ୍ତି ।

ଶେଷରେ ୧୯୪୨ ମସିହା ଅଗଷ୍ଟ ୮ ତାରିଖରେ ବମ୍ବେଠାରେ କଂଗ୍ରେସ ଅଧିବେଶନ ବସିଲା । ସେଥିରେ ଭାରତର ବିଭିନ୍ନ ପ୍ରାନ୍ତରୁ ବ୍ୟକ୍ତିମାନେ ଯୋଗ ଦେଇଥିଲେ । କୋରାପୁଟରୁ ଯାଇଥିଲେ ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ । ଅଧିବେଶନରେ 'ବ୍ରିଟିଶ୍ ସରକାର ଭାରତ ଛାଡ଼' ପ୍ରସ୍ତାବ ପାଶ୍ ହେଲା । ପ୍ରସ୍ତାବଟି କିପରି କାର୍ଯ୍ୟକାରୀ କରାଯିବ ସେଇ ମାର୍ଗ ବତାଇବାକୁ ଗାନ୍ଧିଜୀଙ୍କୁ ଅନୁରୋଧ କରାଗଲା । ମଝିରାତି ପର୍ଯ୍ୟନ୍ତ ଗାନ୍ଧିଜୀ ନେତାମାନଙ୍କଠାରୁ ପରାମର୍ଶ ଗ୍ରହଣ କରି

ଶେଷରେ ଡାକରା ଦେଲେ କଂଗ୍ରେସ କାର୍ଯ୍ୟକ୍ରମ ଶିଘ୍ରତର କରିବାକୁ ହେବ । ଏଥର 'କର ବା ମର' ।

ଏହାର ପରିଣତି କ'ଣ ହେବ ଇଂରେଜ ସରକାର ସହଜରେ ଜାଣିଗଲେ । ସଙ୍ଗେ ସଙ୍ଗେ କଂଗ୍ରେସ ଓ ତାର ଆନୁସଙ୍ଗିକ ଅନୁଷ୍ଠାନଗୁଡ଼ିକ ବେଆଇନ ଘୋଷଣା କରାଗଲା । ଯେଉଁଠି ଯେଉଁ କର୍ମୀଙ୍କୁ ଦେଖିଲେ ତାଙ୍କୁ ବନ୍ଦୀ କଲେ । ସକାଳ ପାହିଲାବେଳକୁ ଗାନ୍ଧୀ, ନେହରୁ, ପଟେଲ ଆଦି ତୁଙ୍ଗ ନେତାମାନେ ଜେଲ୍ ଭିତରେ । ଗିରଆଡ଼ରୁ ଯାଇ ବମ୍ବେରେ ଠୁଳ ହୋଇଥିବା ନେତାମାନେ ଯେ ଯୁଆଡ଼େ ଛିନ୍ ଛତର୍ । ସେମାନେ ଲୁଚି ଲୁଚି ବୁଲିଲେ । ଧରା ପଡ଼ିଲେ ଜେଲ୍ ଯିବା ନିଶ୍ଚିତ ।

ସେ ଦିନ ପାହାନ୍ତିଆରେ ବମ୍ବେଠାରେ ଶ୍ରୀ ବିଶ୍ୱାସରାୟ କୋରାପୁଟର କର୍ମୀମାନଙ୍କ ପାଇଁ କେତେକ ଟିପ୍ପଣୀ ଲେଖି ଗୁପ୍ତ ସଙ୍କେତ ସହିତ ଜୟପୁରକୁ ପଠାଇଦେଲେ ।



# ବାର

୧୯୪୨ ଅଗଷ୍ଟ ୯ ତାରିଖ ସକାଳୁ, କଂଗ୍ରେସ ଅନୁଷ୍ଠାନ ବେଆଇନ ଘୋଷଣା କଲା ପରେ ସରକାରଙ୍କ ପୋଲିସ୍ ସଂସ୍ଥା ବିଶେଷ ତତ୍ପର ହୋଇ ଉଠିଲେ । ଦେଶର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ଧରପଗଡ଼ ଚାଲିଲା । ଜୟପୁରରେ ମଧ୍ୟ ସ୍ୱାଧୀନତା ସଂଗ୍ରାମୀମାନେ ପୋଲିସର କଡ଼ା ନଜରରେ ରହିଲେ । ସବୁଠୁ ବେଶି ଦୃଷ୍ଟି ପଡ଼ିଲା ଖଦୀ ଭଣ୍ଡାର ଉପରେ । ଏହି ଦୋକାନଟି ଯେ କଂଗ୍ରେସ ତତ୍ପରତାର ମୁଖ୍ୟ କେନ୍ଦ୍ର, ତାହା କାହାକୁ ଅଛପା ନଥିଲା । ଖଦୀ ଭଣ୍ଡାରଟି ପୋଲିସ୍ ଥାନା ପାଖରେ ଥିବାରୁ ତା ଭିତରେ ହେଉଥିବା ସମସ୍ତ କାର୍ଯ୍ୟ ପୋଲିସର ଦୃଷ୍ଟି ପଥରେ ରହିଥାଏ । ତା ସତ୍ତ୍ୱେ ଜଣେ ସାଧା ପୋଷାକଧାରୀ ସି. ଆଇ. ଡ଼ି. ଆସି ବାରଣ୍ଡାରେ ବସି ରହିଲା ।

ଖଦୀ ଭଣ୍ଡାରର ପରିଚାଳକ ଶ୍ରୀ କୋଦପ୍ରସାଦ ପଟ୍ଟନାୟକ ଜାଣନ୍ତି କି ସାରା ଜିଲ୍ଲାର କର୍ମୀମାନେ ବି ଖଦୀ ଭଣ୍ଡାର ଉପରେ ଭରସା କରିଥିଲେ । ଯାହା ଖବର ଆସିବ, ଏଇ ଦୋକାନକୁ ।

ଶ୍ରୀ କୋଦପ୍ରସାଦ ପଟ୍ଟନାୟକ ବଡ଼ ଉଦ୍‌ବିଗ୍ନ ହୋଇପଡ଼ିଲେ । ସେ ନିଶ୍ଚିତ ଥିଲେ ଯେ କୌଣସି ନା କୌଣସି ଖବର ନିଶ୍ଚୟ ଆସିବ । ଏଣେ ସି.ଆଇ. ଡ଼ି. ଟାଏ ବାଣ୍ଡରେ ବସିଛି । ତା ନଜରରୁ କିଛି ଛେଇଁ ଯିବ ନାହିଁ । ଖବର ଧରା ପଡ଼େ ତ ଆହୁରି ବିପଦ । ବମ୍ବେର ପ୍ରସ୍ତାବ କର୍ମୀମାନଙ୍କୁ ନ ଜଣାଇଲେ ସମଗ୍ର କାର୍ଯ୍ୟକ୍ରମ ମାଟି ହୋଇଯିବ । ପଟ୍ଟନାୟକେ ମହା ଅଡୁଆରେ ପଡ଼ିଲେ ।

ଦିନ ଏଗାରଟା ହେବ । ଏତିକିବେଳେ ଜଣେ ଲୋକ ଆସି ବସ୍ତାଏ କୁଣ୍ଡା ଦେଇଗଲା । ଉକ୍ତ ଲୋକଟି କଂଗ୍ରେସ କର୍ମୀ ନୁହେଁ । ସୁତରାଂ ସି. ଆଇ. ଡ଼ି ବାବୁ ସନ୍ଦେହ କଲେ ନାହିଁ । ତଥାପି ସେ ବସ୍ତା ଉପରେ ହାତ ମାରି ଦେଖିଲେ ଯେ ଭିତରେ କୁଣ୍ଡା ହିଁ ରହିଛି । ଦୋକାନ ଭିତରକୁ କୁଣ୍ଡା ବସ୍ତାଟି ଗଲା ।

କୋରାପୁଟ ସଙ୍ଗେ ସଙ୍ଗେ ଜାଣିପାରିଲେ ଯେ ଅପ୍ରତ୍ୟାଶିତ ଭାବେ ଏ ଯେଉଁ କୁଣ୍ଡା ବସ୍ତାଟି ଆସିଛି, ସେଥିରେ ନିଷ୍ଟୟ ରହିଛି ବମ୍ବେର ପ୍ରସ୍ତାବ ଓ ନିର୍ଦ୍ଦେଶ । କୁଣ୍ଡା ବସ୍ତାଟା ପ୍ରେରିତ ହେଲା ଖଦୀ ଭଣ୍ଡାରର ଆଉ ଜଣେ କର୍ମୀ ଶ୍ରୀ କୃଷ୍ଣଚନ୍ଦ୍ର ପାତ୍ରଙ୍କ ଘରକୁ । କୁଣ୍ଡା ବସ୍ତା ଭିତରୁ ବାହାରିଲା ଗୋଟିଏ କାଗଜ । ବମ୍ବେଠାରୁ ଶ୍ରୀ ବିଶ୍ୱାସରାୟଙ୍କ ଦ୍ୱାରା ପ୍ରେରିତ ନିର୍ଦ୍ଦେଶମାନେ ସଙ୍ଗେ ସଙ୍ଗେ ତାର ନକଲ ମାନ ସାଇକ୍ଲୋଷ୍ଟାଇଲ୍ ହେଲା । ଜିଲ୍ଲାର ସମସ୍ତ ମୁଖ୍ୟ କେନ୍ଦ୍ରକୁ ସେ ସବୁ ଗୁପ୍ତରେ ପ୍ରେରିତ ହେଲା । ସେଠି ଆହୁରି ନକଲ ବାହାର କରାଯାଇ ଗାଁ ଗଣ୍ଡାରେ ବିତରିତ ହେଲା ।

କାଗଜ ଉପରେ ନିର୍ଦ୍ଦେଶ ଥିଲା କି କଂଗ୍ରେସ 'ବ୍ରିଟିଶ୍ ଭାରତ ଛାଡ଼' ପ୍ରସ୍ତାବ ପାଶ୍ କରିଛି । ମହାତ୍ମା ଗାନ୍ଧୀ ଆଦେଶ ଦେଇଛି କି ଅହିଂସା ମାର୍ଗରେ ସମସ୍ତେ ଶକ୍ତି ପ୍ରୟୋଗ କରି ସତ୍ୟାଗ୍ରହମାନ ଆରମ୍ଭ କରିବାକୁ ହେବ—'କର ବା ମର' । ସ୍ୱାଧୀନତା ଆସିବା ଯାଏ ଆଉ ବିଶ୍ରାମ ନାହିଁ । ସରକାରଙ୍କ ପ୍ରତି ସମ୍ପୂର୍ଣ୍ଣ ଅସହଯୋଗ କରାଯିବ । ପୋଲିସ୍ ଥାନା, କଚେରି ଆଦି ସରକାରୀ ଅଫିସ୍ ସାମନାରେ ସତ୍ୟାଗ୍ରହ ହେବ । ଏଠାରେ ସତ୍ୟାଗ୍ରହ ପାଇଁ ଅଗଷ୍ଟ ୨୧ ତାରିଖ ସ୍ଥିର କରାଯାଇଛି । ବିଶେଷତଃ ଭାରତର ନେତା ମହାତ୍ମା ଗାନ୍ଧିଙ୍କୁ ବନ୍ଦୀ କରାଯାଇଛି । ସରକାରଙ୍କ ଏହି ଅନ୍ୟାୟ ପଦକ୍ଷେପ ବିରୁଦ୍ଧରେ ମଧ୍ୟ ବିକ୍ଷୋଭ ଚାଲିବ । ତଦନୁଯାୟୀ ୨୧ ତାରିଖରେ ଜିଲ୍ଲାର ମୁଖ୍ୟ ସହର-ଗୁଡ଼ିକରେ କର୍ମୀମାନଙ୍କର ନୀରବ ପଦଯାତ୍ରା ଚାଲିବ । 'ବ୍ରିଟିଶ୍ ସରକାର ଚାଲିଯାଅ' ଧ୍ୱନି ଦିଆଯିବ । ତା ପରେ ସେମାନେ ପୋଲିସ୍ ଥାନା ଆଗରେ ନୀରବରେ ବସି ରହିବେ ସରକାର ବିରୋଧୀ ଧ୍ୱନି ଗାଇ ଗାଇ । ସେମାନଙ୍କୁ ବନ୍ଦୀ କଲାଯାଏ ସେମିତି ବସି ରହିବେ ।

ସଙ୍ଗେ ସଙ୍ଗେ ପ୍ରସ୍ତୁତ ହୋଇଗଲା । ତିନି ଦିନ ଭିତରେ ସାରା ଜିଲ୍ଲାର କର୍ମୀମାନେ ଆପଣାକୁ ପ୍ରସ୍ତୁତ କରିନେଲେ ୨୧ ତାରିଖର ବିକ୍ଷୋଭ ପାଇଁ । ଯେତେ ଗୁପ୍ତରେ ପ୍ରଚାର କଲେ ମଧ୍ୟ ଏସବୁ କଥା ପଦାରେ ପଡ଼ିଲା । ବ୍ରିଟିଶ୍ ଶାସନ ପ୍ରତି ଏହା ଚରମ ଆହ୍ୱାନ । ଜିଲ୍ଲା ଏସ୍.ପି. ଆଦେଶ ଦେଲେ ଯେ ପୋଲିସ୍, ଫରେଷ୍ଟ ଗାର୍ଡ଼, ଅବକାଶ ପ୍ରାପ୍ତ ପୋଲିସ୍, ରାଜସ୍ୱ ବିଭାଗର ସମସ୍ତ ପାଇକ, ଚୌକିଦାର ଇତ୍ୟାଦି ପୋଲିସ୍ ଥାନାଗୁଡ଼ିକରେ ତୁରନ୍ତ ଠୁଳ ହେବେ । ଏମାନେ ମିଳିତ ଭାବେ ପରିସ୍ଥିତିର ମୁକାବିଲା କରିବେ । ବିକ୍ଷୋଭ କରିବାକୁ ଦିଆଯିବ ନାହିଁ ।

ଓ୍ୱାମରର ମାଲକଣ୍ଠ ପାଣ ନିର୍ଦ୍ଦେଶର ଗୋଟିଏ ନକଲ ଲକ୍ଷ୍ମଣ ନାୟକଙ୍କୁ ପଠାଇଲେ । ଲକ୍ଷ୍ମଣ ନାୟକ ମୂନରୁ ଜାଣିଗଲେ ଯେ ଏହି ଆନ୍ଦୋଳନ ଭୀଷଣ ହେବ କାରଣ ତାଙ୍କ ଅଞ୍ଚଳରେ ପୋଲିସ୍ ଗ୍ରାମବାସୀମାନଙ୍କ ଉପରେ ପ୍ରତିଶୋଧ ପରାୟଣ ହୋଇଅଛନ୍ତି । ଠିକଣା କଣ ହେଲେ ଯେ କୌଣସି ବାହାନା ଦେଖାଇ ସେମାନେ ନିଷ୍ଠୁର ମାଡ଼ ଦେବେ । ଜେଲ୍ ଭିତରେ ଭର୍ତ୍ତି କରିବେ । ଏ ବିଷମ ପରିସ୍ଥିତିର ମୁକାବିଲା ଅହିଂସା ମାର୍ଗରେ ହିଁ ହେବାକୁ ପଡ଼ିବ । ଆଉ ବସିବାକୁ କି ଭାବିବାକୁ ସମୟ ନାହିଁ ।

ବଳରାମ ପୂଜାରୀଙ୍କ ଜୟପୁରରୁ ଆସିଥିବା ନିର୍ଦ୍ଦେଶଗୁଡ଼ିକର ଅନେକ ନକଲ ପ୍ରସ୍ତୁତ ହେଲା । ଗାଁରେ ସେଗୁଡ଼ିକ ବୁଝିବା ପାଇଁ ପ୍ରଚଳିତ ଆଦିବାସୀ ଭାଷାରେ ଅନୁବାଦ କରାଗଲା । ଯଥା—'କର ବା ମର' ସ୍ଲୋଗାନ ରୂପାନ୍ତରିତ ହେଲା, "ଚୋର ବୃତା ଭୁଇ କର, ନ ପାରିଲେ ମର୍ ।" ବୃତାର ଅର୍ଥ ହେଉଛି କାମ । ଏଠି କାମ ବୁଝାଇବ, ସରକାରୀ ଆଦେଶ ଅମାନ୍ୟ କରିବା । ହାଟ ପାଲୁ ନ ଦେବା । ଯେଉଁ ଗାଁରେ ମଦଭାଟି ଅଛି ସେଠି ଧାରଣା ଦେଇ ମଦ ବିକେଇ ନ ଦେବା ଇତ୍ୟାଦି ।

ବଳରାମଙ୍କ ସହିତ ନିଜେ ଲକ୍ଷ୍ମଣ ଗାଁ ଗାଁ ବୁଲି ନିର୍ଦ୍ଦେଶଗୁଡ଼ିକର ତାତ୍ପର୍ଯ୍ୟ ବୁଝାଇବାରେ ଲାଗିଲେ । ଏ କାନରୁ ସେ କାନ ହୋଇ ସମଗ୍ର ଅଞ୍ଚଳରେ କଂଗ୍ରେସ ବାଣୀ ପ୍ରଚାରିତ ହୋଇଗଲା । ଏହି ପ୍ରସ୍ତୁତି

ଚାଲିଲା ଅଗଷ୍ଟ ୧୬ ରୁ ୨୦ ଯାଏଁ । ଲକ୍ଷ୍ମଣ ୧୪ ତାରିଖରୁ ଘରୁ ବାହାରିଛନ୍ତି ସେ ଥରେ ଲେଉଟି ଯିବାକୁ ସମୟ ନାହିଁ । ଏହି ଦିନଗୁଡ଼ିକରେ ମାଥିଲି, ସାଲିମି, ଚିମଲ୍ ପୁଟ, ପୁସପାଲି, ସିନ୍ଦାବାଡ଼ା ଆଦି ଅନେକ ସ୍ଥାନର ମଦଭାଟି ଆଗରେ ସତ୍ୟାଗ୍ରହ ଚାଲିଲା । ଲୋକଙ୍କୁ ମଦ ନ ଖାଇବାକୁ କୁହାଗଲା । ମଦର ଅପକାରିତା ବୁଝାଇ ଦିଆଗଲା । ଫଳରେ ଗାଁ ଗାଁରେ ମଦଭାଟିମାନ ବନ୍ଦ ହେବାରେ ଲାଗିଲା ।

୧୬ ତାରିଖରେ ମାଥିଲି ଥାନାର ଇନ୍ସପେକ୍ଟର ଜାଣିପାରିଲେ ଯେ ୨୧ ତାରିଖରେ ପୋଲିସ୍ ଥାନା ଉପରେ ଚଢ଼ାଉ ହୋଇପାରେ । ସତ୍ୟାଗ୍ରହ ଓ ଅହିଂସା ଉପରେ ତାଙ୍କର ସମ୍ପୂର୍ଣ୍ଣଜ୍ଞାନ ନଥିଲା । ସେ ଭାବିନେଲେ ଯେ ଲୋକେ ପୋଲିସ୍ ଥାନାକୁ ଆସି ଧ୍ୱଂସକାଣ୍ଡ ଭିଆଇବେ । ସେ ଟେଲିଗ୍ରାମ ଜରିଆରେ ମାଲକାନଗିରିକୁ ଖବର ଦେଲେ କି ମାଥିଲି ଥାନାକୁ ଆହୁରି ଅନେକ ପୋଲିସ୍ ପଠାଇବାକୁ ପଡ଼ିବ । କୋରାପୁଟ ଏସ୍. ପି଼ଙ୍କ ପାଖକୁ ମଧ୍ୟ ଖବର ପଠାଗଲା ।

୨୧ ତାରିଖ ସତ୍ୟାଗ୍ରହକୁ ପଣ୍ଡ କରିବା ପାଇଁ ସରକାରୀ ଓ ପୋଲିସ୍ ସ୍ତରରେ ଯୋଜନା ଚାଲିଲା । କର୍ମୀମାନଙ୍କୁ ଉପୁଖିତ କରିବା ପାଇଁ ଅନେକ ସ୍ଥାନରେ ଯାଞ୍ଚାତା ଆରେଷ୍ଟ ଚାଲିଲା । ଲକ୍ଷ୍ମଣ ଚାରିଆଡ଼େ ଖବର ପଠାଇଲେ ଯେ ଯେଉଁ ଗ୍ରାମଗୁଡ଼ିକରେ ପୋଲିସ୍ ଅତ୍ୟାଚାର ହେଉଛି ବା ହେବାର ସମ୍ଭାବନା ଅଛି ସେଠାର ଇଚ୍ଛୁକ ସଂଗ୍ରାମୀମାନେ ପାହାଡ଼ ଜଙ୍ଗଲରେ ଆତ୍ମଗୋପନ କରନ୍ତୁ । ୨୧ ତାରିଖରେ ନିର୍ଦ୍ଦିଷ୍ଟ ସ୍ଥାନରେ ସେମାନେ ପହଞ୍ଚିବେ । ଅନେକ କର୍ମୀ ସେପରି କଲେ । ତେଣୁ ୨୧ ତାରିଖରେ ସତ୍ୟାଗ୍ରହ ଯେ ଚାଲିବ ଏହା ନିଶ୍ଚିତ । ସ୍ୱାଧୀନତା ସଂଗ୍ରାମୀ-ମାନଙ୍କର ଯଥେଷ୍ଟ ଲୋକବଳ ଅଛି । ତାକୁ ଦବାଇ ଦେବା ପାଇଁ ପୋଲିସ୍ର ଶକ୍ତି ସମୁଦ୍ରକୁ ଶଙ୍ଖେ ପାଣି ପରି ।

ସୁତରାଂ ୨୧ ତାରିଖରେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ମୁହାଁଇବା ପାଇଁ ହୀନବଳ ମାଥିଲି ପୋଲିସ୍ଙ୍କର କୌଣସି ନୈତିକ ସାହସ ନଥିଲା । ସରକାରଙ୍କୁ ଖୁସି କରିବାକୁ ପୋଲିସ୍ ବାହିନୀର ଏକମାତ୍ର ସାହାଭରସା ଥିଲା ଲାଠି ଓ ବନ୍ଧୁକ । କଂଗ୍ରେସ ପ୍ରସ୍ତାବିଦ୍ୱାରା ତାଙ୍କ ଘଉ

ଗାଁ । ଗଣ୍ଡାରେ କମି କମି ଆସୁଥିବାରୁ ଯେଉଁ ନୈରାଶ୍ୟ ପୋଲିସ୍, ଗାର୍ଡ଼ ଇତ୍ୟାଦିଙ୍କ ମନରେ ଖେଳି ଯାଇଥିଲା, ତାର ପ୍ରତିଶୋଧ ନେବା ବେଳ ଆସି ପହଞ୍ଚୁଛି ।

ଆଜ ତଳେ ମଧ୍ୟ ଠାକ ବସିଛନ୍ତି ନାଟ ଦେଖିବାକୁ । ଦରକାର ପଡ଼ିଲେ ପୋଲିସକୁ ସାହାଯ୍ୟ କରି ଗୋଟାଏ ଗୋଟାଏ କାମୁଡ଼ ଦେବେ ଲକ୍ଷ୍ମଣଙ୍କୁ । ସେମାନେ ହେଲେ ମଦ ଦୋକାନୀ, ହାଟ କଂଟ୍ରାକ୍ଟର ଏବଂ ପୋଲିସ୍‌ର ବଟଙ୍କରମାନେ । କଂଗ୍ରେସ କାର୍ଯ୍ୟ ଆରମ୍ଭ ହେଲା ଦିନଠୁ ତାଙ୍କ ବ୍ୟବସାୟ ମାନ୍ଦା, ଏବେ ବନ୍ଦ ହେବା ଉପରେ । ଏମାନେ ଶାଗୁଣା ପରି ଘୂରି ବୁଲୁଛନ୍ତି ମାତିଲିର ଅନ୍ଦ କନ୍ଦରେ । ସେମାନଙ୍କର ଇଚ୍ଛା ଗଣ୍ଡଗୋଳ ସୃଷ୍ଟି ହେଉ ।



# ତେର

୧୯୪୨ ସାଲ, ଅଗଷ୍ଟ ୨୧ ତାରିଖ । ଶୁକ୍ରବାର ।

ଶ୍ରାବଣ ମାସ । ବର୍ଷା ଦିନ । କୃଷ୍ଣପକ୍ଷ ।

ମାଲକାନଗିରିର ଦଣ୍ଡକାରଣ୍ୟ ଆହୁରି ଘଞ୍ଚ, ଆହୁରି ଭୟସଙ୍କୁଳ ହୋଇ ଉଠୁଛି । ନଈ ନାଳ ଗର୍ଜ୍ଜନ ତର୍ଜ୍ଜନ କରି ଚାଲିଛନ୍ତି । ମାଟିଆ ବନ୍ୟା ପାଣିରେ ସେ ସବୁ ସ୍ଫୀତ । କୋଲାବ ଭୟଙ୍କର ରଡ ଛାଡ଼ି ତୀରବେଗରେ ମାଡ଼ି ଚାଲିଛି ଆଗ୍ନେୟଗିରିର ତରଳ ଲାଭା ପରି ।

ଏ ଭୟଙ୍କର ପରିସ୍ଥିତିରେ ମଧ୍ୟ ସବୁଆଡ଼େ ଯେପରି ପୂର୍ଣ୍ଣତା ବିରାଜିଛି । ପର୍ବତ, ବଣ, କ୍ଷେତ, ଚତୁର୍ଦ୍ଦିଗ ଶ୍ୟାମଳ ଶ୍ରୀରେ ବିମଣ୍ଡିତ ।

ପାହାନ୍ତିଆ ପହରୁ ଶହ ଶହ ଲୋକ ମାଥିଲି ଅଭିମୁଖେ ଚାଲିଛନ୍ତି । ଏମାନେ ଆସୁଛନ୍ତି କାହିଁ କେଉଁ ଦୂର ଦୂରାନ୍ତରୁ । ଉତ୍ତରରୁ ଦଳ ଦଳ ହୋଇ ଲୋକ କୋଲାବ ନଦୀ ପାର ହୋଇ ଆସୁଛନ୍ତି ଚେନ୍ଦୁଲଗୁମ୍ମା, ବାଲି, ଉଦୟଗିରି, ଲୁଲେରୁ, କଳୁରକୋଣ୍ଡା ଓ ସାଲିମି ଅଞ୍ଚଳରୁ । ଆସୁଛନ୍ତି ଲୋକେ ରାମଗିରି, ଗୁପ୍ତେଶ୍ୱରରୁ ଅନେକ ପର୍ବତ ଓ ଅରଣ୍ୟ ଡେଇଁ । ପଶ୍ଚିମ ଓ ଦକ୍ଷିଣରୁ ଆସୁଛନ୍ତି ବିସ୍ତୀର୍ଣ୍ଣ ବଣ୍ଡାଘାଟି, ଖଇରପୁଟ ଓ ଗୋବିନ୍ଦପଲ୍ଲୀରୁ । ମାଲକାନଗିରିର ବିସ୍ତୀର୍ଣ୍ଣ ଇଲାକାରୁ ଲୋକେ ଚାଲିଛନ୍ତି ଗରିଆ ନଦୀ ପାର ହୋଇ । କେତେ ଜଣ ତ ଦୁଇ

ବନ ହେଲା ଗ୍ରାମ୍ୟଲୋକଙ୍କ କଳା କଟି କଟି ରାତ, ହିଂସ୍ରଜନ୍ତୁର ଜଙ୍ଗଲ, ପାତାଳଗାମୀ ଖୋଲ କାହାକୁ ଖାତିର ନାହିଁ । ଭେକ ଶେଷ ବାଧ୍ୟ ନାହିଁ ।

ସେମାନଙ୍କ ହୃଦୟ ଭିତରେ ପ୍ରତିଧ୍ୱନିତ ହେଉଛି "ଗାନ୍ଧିଜୀନେ ହୁକୁମ୍ ଦିଆ ମର୍‌ନେ ତକ୍ ଲଡ଼େଙ୍ଗେ ହମ୍" ସେମାନେ ଲଢ଼ିବେ । ଯେଉଁମାନେ ଯୁଗ ଯୁଗ ଧରି ତାଙ୍କୁ ନିଷ୍ପେଷିତ କରି ରଖିଛନ୍ତି ସେମାନଙ୍କ ବିରୁଦ୍ଧରେ ଲଢ଼ିବେ । ତା ପୁଣି ବିନା ଅସ୍ତ୍ରରେ । ସେପରି ଲଢ଼ିବାରେ ଆନନ୍ଦ ଅଛି । ଗଲେ ଯାଉ ପଛେ ଏ ଜୀବନ । ସେଥିପାଇଁ ପଥଶ୍ରାନ୍ତ ଜଣା ପଡ଼ୁନାହିଁ । ସମସ୍ତେ ସତେଜ, ବେଗବାନ୍ ।

ପଛରେ ଛାଡ଼ି ଚାଲି ଆସିଛନ୍ତି ସେମାନେ ତାଙ୍କ ସ୍ତ୍ରୀଙ୍କୁ, ସନ୍ତାନଙ୍କୁ, ବାପ, ମା'ଙ୍କୁ । କିଏ ଜାଣେ, ହୁଏତ ଆଉ ଦେଖା ହେବ ନାହିଁ । ଯଦି ବଞ୍ଚି ରହନ୍ତି ତେବେ ସେମାନେ ଏକ ନୂଆ ଦୁନିଆରେ ବଞ୍ଚିବେ, ପୁରୁଣାରେ ନୁହେଁ । ମହାଭାରତ ସମର ଯେପରି । ବଞ୍ଚିଲେ ସ୍ୱାଧୀନତା ଭୋଗ, ମଲେ ସ୍ୱର୍ଗଲାଭ ।

ଭିନ୍ନ ଭିନ୍ନ ଗାଁରୁ ଲୋକେ ଆପଣା ଦଳପତିଙ୍କ ପଛେ ପଛେ ଚାଲିଛନ୍ତି । ଦଳପତିଙ୍କ ହାତରେ ଶୋଭା ପାଉଛି ତିରଙ୍ଗା ପତାକା । ସମସ୍ତଙ୍କ ମୁହଁରେ ରାମଧୂନ ।

ପାହାଡ଼ଆରୁ ମେଘୁଆ ପାଗ ଲାଗି ରହିଛି । ମେଘ ଗୁରୁଗୁରୁ । କିନ୍ତୁ ବର୍ଷା ନାହିଁ ।

ଦିନ ଦଶଟାବେଳକୁ ସମସ୍ତେ ହାଜର ହେଲେ ମାତିଲି ହାଟରେ । ଶୁକ୍ରବାର ଦିନ ମାତିଲିର ସାପ୍ତାହିକ ହାଟରେ ସହଜେ ଖୁବ୍ ଭିଡ଼ ହୁଏ । ଲକ୍ଷ୍ମଣ ନାୟକ ସମସ୍ତଙ୍କ ସହିତ ବ୍ୟକ୍ତିଗତ ଭାବେ ମିଳାମିଶା କରି ସୁବିଧା ଅସୁବିଧା ବୁଝୁଥାନ୍ତି । ସେ ଶହ କର୍ମୀ । ମୁଣ୍ଡ ଗଣି ହେଉ ନାହିଁ । ତିରଙ୍ଗା ପତାକାର ଜୁଆର ଖେଳୁଛି । ସେ ଏକ ମହା ମିଳନର ଦୃଶ୍ୟ । ସେଠି ଛୁଆଁ ଅଛୁଆଁ ଜାତି ଭେଦର ପ୍ରଶ୍ନ

ନାହିଁ । ସମସ୍ତେ କୁଣ୍ଢାକୁଣ୍ଢି । ଦୂର ଦୂରାନ୍ତର ଗ୍ରାମବାସୀଙ୍କ ଭିତରେ ଆନ୍ଦୋଳନର ଭାବପ୍ରବଣ ଦୃଶ୍ୟ । ବଂଶୀଆ ଘାଟର ଉଦୟନାଥ ଓଝା ହାଟ ସାରା ଟମଟମା (ଢୋଲ) ବାଡେଇ ବଡ଼ପାଟିରେ ଜଣାଇ ଦେଉଛି କର୍ମୀମାନେ କେଉଁଠି ଆପଣାର ବ୍ୟାଗ୍, ମୁଣି ଇତ୍ୟାଦି ରଖିବେ, କେଉଁ ସ୍ଥାନରେ ସେମାନେ ରୁଣ୍ଡ ହେବେ । ମଧ୍ୟେ ମଧ୍ୟେ ତା ପାଟିରୁ ବି ବାହାରି ପଡ଼ୁଛି, 'ମହାତ୍ମା ଗାନ୍ଧିଙ୍କ ଜୟ' । ହାଟଯାଆର ଲୋକେ ତାଟକା ହୋଇ ଏ ଅଭୂତ-ପୂର୍ବ ଦୃଶ୍ୟକୁ ଚାହିଁଛନ୍ତି । ସତେ ଯେମିତି ହାଟ ଭିତରେ ଦଶହରା ମଉଛବ ଚାଲିଛି ।

କଂଗ୍ରେସ କର୍ମୀଙ୍କ ସମାବେଶ ଦେଖି ହାଟ ପାଖ ମଦ ଦୋକାନୀ ଶଙ୍କରସ୍ୱାଇଁ ମଦଭାଟି ଆପେ ବନ୍ଦ ହୋଇଗଲା । ହାଟ ଦିନ, ଏତେ ଲୋକ, କେତେ ଆଶା ସେ ବାନ୍ଧି ନଥିଲା ମୋଟା କିଛି ଆଦାୟ କରିନେବାକୁ । ସେହିପରି ହାଟ କଂଟ୍ରାକ୍‌ଟର ନରସିଂହ ପୂଜାରୀର ଅବସ୍ଥା । ହାଟର ସମସ୍ତ ବିକାଳି କଂଗ୍ରେସ ପ୍ରରୋଚନାରେ ପଡ଼ି ହାଟ ପାଲୁ ଦେବାପାଇଁ ମନା କରିଦେବାରୁ ସେ ମୁହଁ ଟାକୁ ହାଣ୍ଡି କରି ବସିଛି । ଆଜ ଏ ଦୁଇଜଣଙ୍କର ବେପାର ମାଟି ହୋଇଗଲା ।

ସାଢ଼େ ଦଶ । ମାଥିଲି ଥାନା ଆଡ଼େ ଯିବାର ସମୟ ଆସି ଉପସ୍ଥିତ ହେଲା । ବଳରାମ ପୂଜାରୀଙ୍କ ନିର୍ଦ୍ଦେଶମତେ ହାଟର ପଶ୍ଚିମ ଦିଗରେ ଥିବା ଏକ ଖୋଲା ସ୍ଥାନରେ ସମସ୍ତେ ଛିଡ଼ା ହେଲେ । ସମସ୍ତଙ୍କର ଖୋଲା ହାତ । ସାମାନ୍ୟ କେତେ ଜଣ ତିରଙ୍ଗା ପତାକା ଧରିଛନ୍ତି । ସମସ୍ତେ ଯୁବକ, ବୟସ ତିରିଶରୁ ଚାଳିଶ ଭିତରେ । ଅଳ୍ପ କେତେ ଜଣ ପ୍ରୌଢ଼ ।

ଚାରିହେ କର୍ମୀ ଏକାଠି ଛିଡ଼ା ହେଲେ ପନ୍ତିକୁ ପନ୍ତି ଧାଡ଼ି ବାନ୍ଧି । ସମସ୍ତଙ୍କୁ ମୁହଁ କରି ଲକ୍ଷ୍ମଣ ନାୟକ ଛିଡ଼ା ହେଲେ । ହାତରେ ଧରିଥିବା ତିରଙ୍ଗା ପତାକାର ଝଣ୍ଡାକୁ ଥରେ ପୋତି ତାକୁ ନମସ୍କାର କଲେ ଏବଂ କହିଲେ, 'ଭାରତମାତାଙ୍କର ଜୟ' । ଅନ୍ୟମାନେ ବି ଏହି ପଦ ବୋଲି ଗଗନ ପବନ ମୁଖରିତ କଲେ । ତା ପରେ ଲକ୍ଷ୍ମଣ ନାୟକ କହିଲେ, "ଭାଇମାନେ, ଆଜ ତୁମେ ଏଠାରେ କାହିଁକି ରୁଣ୍ଡ ହୋଇଛ ତୁମେ ଜାଣ । ଆମେ ଆଗରୁ

କହିଥିବା ଅନୁସାରେ ସବୁ ଚାଲିବ । ଏବେ ଏଠାରୁ ଆମେ ଥାନା ଆଡ଼େ ଯିବା । କିନ୍ତୁ ତା ପୂର୍ବରୁ ମୁଁ ଗୋଟିଏ କଥା କହିବାକୁ ଚାହେଁ ।"

ଚାରିଆଡ଼େ ନୀରବତା ବ୍ୟାପିଗଲା ।

ଲକ୍ଷ୍ମଣ ବଡ଼ ପାଟିରେ କହିଲେ, 'ତୁମେମାନେ ସମସ୍ତେ ତୁମର କୁନ୍ତୁଣି (ଡ଼ାହାଣ) ଗୋଡ଼ ଆଗରେ ପକାଅ ।'

ପ୍ରଥମେ ନିଜେ ଲକ୍ଷ୍ମଣ ଆପଣାର ଡାହାଣ ଗୋଡ଼ ତୋଳି ଜନତାର ସାମନାରେ ପକାଇଲେ । ତହୁଁ ଲକ୍ଷ୍ମଣ କହିଲେ, "ଏଇ ଯୋଉ ପାଦ ଆମେ ଆଗକୁ କାଢ଼ିଲେ, ସ୍ୱରାଜ୍ୟ ଆସିଲା ପର୍ଯ୍ୟନ୍ତ ତାହା ଆଉ କେବେ ପଛକୁ ଲେଉଟିବ ନାହିଁ । ଆଗରେ କଣ୍ଟା, ଲଙ୍କା, ବାଘ, ବନ୍ଧୁକ ଯାହା ପଡ଼ୁ, ଗୋଡ଼ ଯୋଡ଼ିକ ଆଗକୁ ହିଁ ଆଗଉଥିବ । ମଲେ ମରିଯିବା ପଛେ ପଛକୁ ହଟି ଆସିବାର ପ୍ରଶ୍ନ ନାହିଁ । କଣ କହ ତ ?"

ଲକ୍ଷ୍ମଣଙ୍କର ଏହି ମର୍ମସ୍ପର୍ଶୀ କଥା ଶୁଣି ସମସ୍ତେ ଶିହରି ଉଠିଲେ । ଦେହରେ ନୂତନ ଉନ୍ମାଦନା ଖେଳିଗଲା । ଜନ ସମୁଦ୍ର ଏକ ସ୍ୱରରେ ଉଚ୍ଛୁଳି ଉଠିଲା, "ହଁ ରାଜି ।"

"ଦେଖ ଭାଇମାନେ ! ଡରୁଆ ଲୋକେ କେବେ ଲଢ଼ିପାରିବେ ନାହିଁ । ତେଣୁ ଯାହାର ମନରେ ଟିକିଏ ହେଲେ ଡ଼ର ଅଛି ସେ ଏଠାରୁ ଚାଲିଯାଉ । ତା ପ୍ରତି ଆମର ମୋଟେ ଖରାପ ଧାରଣା ହେବ ନାହିଁ ।" ଲକ୍ଷ୍ମଣ ଏତିକି କହି ଚାରିଆଡ଼କୁ ଚାହିଁଲେ । କେହିହେଲେ ଲୋକ ଆପଣା ସ୍ଥାନରୁ ବିଚ୍ୟୁତ ହେଲେ ନାହିଁ ।

ତା ପରେ ଲକ୍ଷ୍ମଣ କହିଲେ, "ଆମେ ଥାନା ଆଗରେ ଗୋଟିଏ ମିଟିଂ କରିବା । ଥାନା ଚାଳ ଉପରେ ତ୍ରିରଙ୍ଗା ପତାକା ଉଡ଼ାଇଲା ପରେ ଗେଟ୍ ମୁହଁରେ ବସି ରହିବା । ଆମକୁ ବନ୍ଦୀ କଲଯାଏ ସେଠୁ ଉଠିବା ନାହିଁ । କିନ୍ତୁ ଭାଇମାନେ ଗୋଟିଏ କଥା କହି ଦେଉଛି, ଆମକୁ ପୋଲିସ୍ ବାଡ଼େଇବ, ଆମ ଉପରେ ଅତ୍ୟାଚାର କରିବ । ଏହା ନିଶ୍ଚିତ । କିନ୍ତୁ ଆମ ଭିତରୁ କେହି ହେଲେ ହିଂସାର ଆଶ୍ରୟ ନେବ ନାହିଁ ।

ଏଥର ସମସ୍ତେ ଥାନା ଆଡେ ଅଗ୍ରସର ହେଲେ । ଆଗରେ ଚାଲିଛନ୍ତି ଲକ୍ଷ୍ମଣ ହାତରେ ତିରଙ୍ଗା ପତାକାର ମଣିଷେ ଉଚା ଝଣ୍ଡା ଧରି । ତାଙ୍କ ପଛକୁ ବଳରାମ ପୂଜାରି । ତାଙ୍କ ପଛକୁ ସମସ୍ତେ ଧାଡ଼ି ବାନ୍ଧି ଚାଲିଛନ୍ତି । ଲୋକେ ଡାଣ୍ଡରେ ଘାଟରେ ଥାବା କାବା ହୋଇଛନ୍ତି । ମାତିଲିରେ ଏହା ଏକ ଅପୂର୍ବ ଦୃଶ୍ୟ ।

ମାତିଲି ଥାନା ସବ୍‌ଇନ୍‌ସପେକ୍‌ଟର ଶ୍ରୀ ଏମ୍‌. ଜଗାନାଇକୁଲୁ ଡୋରା ଥାନା ଦୁଆରେ ଛିଡ଼ା ହୋଇ ଶୁଣିପାରିଲେ ଗଗନଫଟା 'ମହାତ୍ମା ଗାନ୍ଧିଜୀ ଜୟ' ଶବ୍ଦ । ଏଇ ଲାଗେ ମ ଡ଼ ଆସିବେ ଶହ ଶହ କର୍ମୀ । ମହା ଅଡୁଆରେ ପଡିଲେ ସେ । ଏଇ ଘଟଣାକୁ ମୁକାବିଲା କରିବା ପାଇଁ ପୂର୍ବଦିନ (୨୦-୮-୪୨)ରେ ସମସ୍ତ ବନ୍ଦୋବସ୍ତ ହୋଇଥିଲା । ସ୍ଥିର ହୋଇଥିଲା ଯେ ମାଲକାନଗିରି ଓ ଭେଙ୍କଟାପଲମର ପୋଲିସ ବାହିନୀ ଓ ସବଇନ୍‌ସପେକ୍‌ଟର ମାତିଲି ଠାରେ ଉପସ୍ଥିତ ରହିବେ । ତା'ଛଡ଼ା ଅନ୍ୟାନ୍ୟ ବିଭାଗରୁ, ଯଥା—ଅବକାରି ଇନ୍‌ସପେକ୍‌ଟର ଓ ତାଙ୍କର ଚାରୋଟି ଜମାନ, ଜୟପୁର ଜମିଦାରଙ୍କ ରେଭେନ୍ୟୁ ଇନ୍‌ସପେକ୍‌ଟର ଓ ତାଙ୍କର ଦୁଇଟି ପିଅନ୍‌, ଦୁଇଜଣ ଜଙ୍ଗଲରକ୍ଷୀ ଓ ଚାରିଜଣ ମାତିଲି ଗ୍ରାମବାସୀ ସାହାଯ୍ୟ କରିବେ । ଏହା ସ୍ଥିର ହୋଇ ବନ୍ଧୁକ, ଲାଠି, ଗୁଳିଗୁଳା ଆଦି ଜମା ହୋଇଛି ସତ କିନ୍ତୁ ମାଲ୍‌କାନଗିରି ଓ ଭେଙ୍କଟାପଲମ୍‌ ଆଡୁ ପୋଲିସ୍‌ ଏତେବେଳ ଯାଏ ଆସି ନାହାନ୍ତି । ସେମାନେ ହିଁ ବନ୍ଧୁକ ଚଳାଇ ପାରିବେ । ଉପସ୍ଥିତ ଥିବା ଅନ୍ୟମାନେ କେଉଁ କାମକୁ ନ ହେବେ ?

ଜଗାନାଇକୁଲୁ ଡୋରା ବ୍ୟସ୍ତ ହେଲେ କିନ୍ତୁ ବିଚଳିତ ହେଲେ ନାହିଁ । ଆଉ ଘଣ୍ଟାଏ ତାଙ୍କୁ ଦରକାର ମାଲକାନଗିରି ଖବର ଦେଇ ପୋଲିସ ଆଣିବାକୁ । ଘଣ୍ଟେ ଦୁଇ ଘଣ୍ଟା କୌଣସିମତେ ପାର କରିଦେଲେ ଅଡୁଆ ଛୁଟିବ ।

ଅଳ୍ପ ସମୟ ଭିତରେ ସ୍ୱାଧୀନତା ସଂଗ୍ରାମୀମାନେ ଆସି ପହଞ୍ଚିଲେ ଥାନା ସାମନା ପଡିଆରେ । ଶୃଙ୍ଖଳିତ ଭାବରେ ସେମାନେ ଛିଡ଼ା ହେଲେ । ଲକ୍ଷ୍ମଣ ନାୟକ ତାଙ୍କୁ ଯେଉଁ ଭାଷଣ ଦେଇଥିଲେ ତାର ସାର ମର୍ମ ହେଲା—

ଭାଇମାନେ ! ଆମର ନେତା ମହାତ୍ମା ଗାନ୍ଧୀ ହୁକୁମ ଦେଇଛନ୍ତି କି ଆଜଠୁ ଏ ଦେଶ ଆମର । ବ୍ରିଟିଶ୍ ସରକାର ଭାରତ ଛାଡ଼ି ଚାଲିଯିବାକୁ ହେବ । ଜୟପୁରର ବୁଢ଼ା ରଜା ମଧ୍ୟ ବ୍ରିଟିଶ୍ ବଳରେ ବଳୀୟାନ୍ ନୁହଁନ୍ତି । ସେ ଥାଇ ହେଲେ ନ ଥାଇ ସେଇଠି । ତେଣୁ ଆମେ ଆଜି ସ୍ୱାଧୀନ । ଆମେ ଆଜି କାହାକୁ ଡ଼ରି ମରି ଚଳିବୁ ନାହିଁ ।

ଏହି ପୋଲିସ୍ ଥାନା ଆମେ କବଜା କରିଛୁ । ଏହା ଆମର । ପୋଲିସ୍ ଭାଇମାନେ ଆମରି ଭାରତର । ତେଣୁ ସେମାନେ ମଧ୍ୟ ଆମ ସହିତ ମିଶିଯିବା ଉଚିତ ।''

ଏହି ସମୟରେ ଜଗାନାଇକୁଲୁ ଦୌଡ଼ି ଲକ୍ଷ୍ମଣଙ୍କ ପାଖକୁ ଆସି କିଛି ନ ଜାଣିଲା ପରି ସାକୁଲାଇ କହିଲେ ''କୁଆଡ଼େ ଆସିଲ ଭାଇମାନେ ?''

ଲକ୍ଷ୍ମଣ ନାୟକ କହିଲେ, ''ଆମେ କାହିଁକି ଆସିଛୁ ଏଇ ଲାଗେ ତ କହିଲି । ତୁମେ ଶୁଣିଛ । ଆଜି ଅଧିକା କିଛି ନୁହେଁ । ଆମେ ଏବେ ଆମର ଏଇ ପୋଲିସ୍ ଥାନା ଉପରେ ତିରଙ୍ଗା ପତାକା ଉଡ଼ାଇବୁ । ତା ପରେ ଥାନା ଆଗରେ ବସି ରହିବୁ । ତେଣିକି ତୁମେ ଯାହା କରିବ ।''

ଜଗାନାଇକୁଲୁ ଆଗରୁ ପ୍ରସ୍ତୁତ ଥିଲାପରି କହିଲେ, ''ହଁ, ନ ଉଡ଼ାଇବ କାହିଁକି ? ଉଡାଅ । ତେବେ ଗୋଟିଏ କଥା ଏତେ ଲୋକେ ବହୁ ଦୂର ଦୂରାନ୍ତରୁ ଆସିଛ, ଏତେ ଟିକିଏ କାମ ସାରି ଚାଲିଯିବ କାହିଁକି ? ବରଂ ଗୋଟିଏ କାମ କଲେ ଭଲ ହୁଅନ୍ତା । ଏବେ ହାଟରେ ବହୁତ ଲୋକ ଅଛନ୍ତି । ତେଣୁ ହାଟକୁ ଯାଇ ମିଟିଂ କର । ଅନେକ ଲୋକ ତୁମ କଥା ଶୁଣିବେ । ତୁମମାନଙ୍କର ଶ୍ରମ ସାର୍ଥକ ହେବ । ତା ପରେ ତୁମେ ଏଠାକୁ ଆସି ବାନା ବାନ୍ଧିବ । ଲୋକେ ବି ଦେଖିବେ । ଡ଼େରି କଲେ, ହାଟ ଭାଙ୍ଗିଗଲେ ଏ ମଉକା ମିଳିବ ନାହିଁ ।

ତୁମ ଭଲ ପାଇଁ କହୁଛି । ଇଚ୍ଛା ହେଲେ କର ନ ହେଲେ ନାହିଁ ।''

ଜଗାନାଇକୁଲୁଙ୍କ କଥା କେତେକ କର୍ମୀଙ୍କ ମନକୁ ପାଇଲା । ଆଜି କେତେ ଜଣ ଭାବିଲେ, ଯେଉଁ ପୋଲିସ୍‌ମାନେ ମଣିଷକୁ ପଶୁଠାରୁ ହୀନ କରି ଗାଳି ଦିଅନ୍ତି, ସେମାନେ ଯେ ଭାଇ ବୋଲି କଅଁଳେଇ ଡ଼ାକିଲେଣି,

ତା ପଛରେ ନିଶ୍ଚୟ କିଛି ଚକ୍ରାନ୍ତ ଅଛି । କିନ୍ତୁ ପ୍ରଥମୋକ୍ତ ବ୍ୟକ୍ତିମାନଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲଗିଲା । ଲକ୍ଷ୍ମଣ ନାୟକ ମଧ୍ୟ ହାଟରେ ମିଟିଂ କରି ଆସିବାକୁ ଇଚ୍ଛା କଲେ ।

କର୍ମୀମାନେ ଫେରିଗଲା ପରେ ଜଗାନାଇକୁଲୁ ତତ୍ପର ହୋଇ ଉଠିଲେ । ସଙ୍ଗେ ସଙ୍ଗେ ଗୋଟିଏ ମଟରଗାଡ଼ି ଯୋଗାଡ଼ କରି ପଠାଇଦେଲା ମାଲକାନଗିରିକୁ ।

ଏଣେ ହାଟକୁ ଫେରିଯାଇ ଲକ୍ଷ୍ମଣ ନାୟକ ଗୋଟିଏ ସଭା କରିଥିଲେ । ହଜାର ହଜାର ଲୋକେ ତାଙ୍କ ଭାଷଣ ଶୁଣିଥିଲେ । ଲକ୍ଷ୍ମଣ ନାୟକ ସମସ୍ତଙ୍କୁ ବୁଝିଲା ଭଳି ଦେଶୀୟ ଭାଷାରେ ଯାହା କହିଥିଲେ ତାର ସାର ମର୍ମ ହେଲା, "ଭାଇମନ୍ ! ଗାନ୍ଧୀ ମହାପୁରୁ କଇଲା ଆଚେ ଗୋରା ସାଇବମନ୍ ଆଜକେ (ଅଜାଡ଼ୁ) ଚାଲିଯିବାକୁ ପଡ଼ୁସି (ପଡ଼ିବ) । ଜଇପୁରୁର ବୁଢା ରଜା ମିଶା (ମଧ୍ୟ) ଆଜକେ ଯାଇସି । ଏଥର ଆମର୍ ଗାଁ, ବଣ୍, ଡଙ୍ଗର୍ ସବୁ ଆମର । ଆଜକେ ବେଠି ବଗାରି ନାଇଁ, ହାଟ୍ ପାଲୁ ନାଇଁ, କାଠ୍ କଟା ପାଲୁ ନାଇଁ । ଗଛ ମାଛ ଆମର ହକ୍ (ଅଧିକାରଭୁକ୍ତ) ପୁଲିସ୍ ଥାନା, ଶବନ ଅଫିସ୍ ଆଉରି ସବୁ ଅଫିସ୍ ଆମର୍ ।"

ଲୋକମାନେ ତନ୍ମୟ ହୋଇ ଶୁଣୁଥାନ୍ତି । ମଝେ ମଝେ ସ୍ଲୋଗାନ୍ ଦିଆ ଯାଉଥାଏ, "ବ୍ରିଟିଶ୍ ସରକାର ଫେରିଯାଅ ।"

ଦିନ ବାରଟା ବାଜିଲା । ତଥାପି ଆକାଶ ମେଘାଚ୍ଛନ୍ନ । ସକାଳର ସେଇ ମେଘ ଗୁଡ଼ୁଗୁଡ଼ୁ ଅକାଶ । ସୂର୍ଯ୍ୟର ତାପ ନାହିଁ । କର୍ମୀମାନେ ଦ୍ୱିତୀୟ ଥର ପାଇଁ ଥାନା ଆଡ଼େ ଚାଲିଲେ । ସେମାନଙ୍କ ସଂଖ୍ୟା ଏବେ ନିକିଏ ବେଶି । ଦେଖଣାହାରି ମଧ୍ୟ ବେଶି ।

ବର୍ତ୍ତମାନ କିନ୍ତୁ ପୋଲିସ ଥାନା ସକାଳର ପରି ନୁହେଁ । ମାଥିଲି ଥାନାର ଚାରିପଟେ ବାଉଁଶ ବାଡ଼ । ମୁଖ୍ୟ ରାସ୍ତାରୁ ଥାନା ଭିତରକୁ ଯିବା ବାଟରେ ଗୋଟିଏ ଗ୍ରେଟ ପୋଲ । ମାଲକାନଗିରିରୁ ଏ ଭିତରେ ଛ ଜଣ ପୋଲିସ୍ ଓ ଦୁଇଜଣ ସବ୍‌ଇନ୍‌ସପେକ୍‌ଟର ଚାଲି ଆସିଲେଣି ।

ଦେଖାଗଲା ପୋଲ ପାଖରେ ଦୁଇଜଣ ସବ୍‌ଇନସ୍‌ପେଟର ପିସ୍ତଲ ଧରି ଛିଡ଼ା ହୋଇଛନ୍ତି । ଥାନା ଭିତରେ ମାଣ୍ଡଲ ସବ୍‌ଇନସ୍‌ପେକ୍ଟର ଶ୍ରୀ ଜଗାନାଇକୁଲୁ ଦୋର । ମୁଖ୍ୟ ଗେଟ୍‌ ପାଖରେ ଛ ଜଣ ଲୁହାଟୋପି ପିନ୍ଧା ଓ ବନ୍ଧୁକଧାରୀ ପୋଲିସ୍‌ । ବାଉଁଶ ବାଡ଼ କଟ୍ଟେ କାଣ୍ଡ ଲାଠିଧାରୀ ଜଙ୍ଗଲରକ୍ଷୀ, ଅବକାରୀ ପୋଲିସ୍‌ ଓ ଅନ୍ୟମାନେ । ଏମାନଙ୍କ ଭିତରୁ କେତେ ଜଣ ମଦ୍ୟପାନ କରି ନାଲ୍‌ ନାଲ୍‌ ଆଖିରେ ସତେ ଯେମିତି ଗ୍ରାସିବାକୁ ଜାଗ୍‌ ତିଆରି ହୋଇ ରହି ରହିଛନ୍ତି ।

ଥାନା ନିକଟରେ ଲୋକେ ପହଞ୍ଚିବା କ୍ଷଣି ମୁଁ ବ ପରି ଧାଇଁ ଆସିଲେ ନାହିଁ ଜଗାନାଇକୁଲୁଙ୍କୁ ସମ୍ଭାଷଣ ଜଣାଇବା ପାଇଁ । ସଙ୍ଗେ ସଙ୍ଗେ ଉକ୍ତ ସମାବେଶକୁ ବେଆଇନ ଘୋଷଣା କରି ଫେରିଯିବାକୁ କୁହାଗଲା । ଲକ୍ଷ୍ମଣ ନାୟକ ଆହ୍ୱାନ ଦେଲେ, 'ଯାହା ବିପଦ ପଡ଼ିଲେ ପଡ଼ୁ ପଛେ, ଯେଉଁଥିପାଇଁ ଆମେ ଆସିଛେ ତାହା କରିବାହିଁ କରିବା । ଆଗରୁ କହିଛୁ, ଏ ଗୋଡ଼ ଆଜି ପଛେଇବ ନାହିଁ କେବେ ।'

'ବନ୍ଦେ ମାତରମ୍‌' ଧ୍ୱନିରେ ଚତୁର୍ଦ୍ଦିଗ କମ୍ପି ଉଠିଲା । ବାଧାବିଘ୍ନ ଏଡ଼ି କର୍ମୀମାନଙ୍କ ସ୍ରୋତ ମାଡ଼ି ଚାଲିଲା ଥାନା ଗେଟ୍‌ ପାଖକୁ । ପୋଲିସ ତରଫରୁ ଚାଲିଲା ଲାଠି ଚାଳନା । ଲକ୍ଷ୍ମଣ ବଡ଼ ପାଟିରେ ସତର୍କ କରି ଦେଉଥାନ୍ତି କସ୍ମିନ୍‌କାଳେ କର୍ମୀମାନେ ଯେପରି ପୋଲିସ୍‌ ଉପରକୁ ହାତ ନ ଉଠାଇବାକୁ । ସୁତରାଂ ଏତେ ବେଶି ଜନବଳ ଥିଲେ ସୁଦ୍ଧା କର୍ମୀମାନେ ଲାଠି ମାଡ଼ ହିଁ ଖାଇବାରେ ଲାଗିଲେ । କିନ୍ତୁ ଏତେ ବଡ଼ ଜନସ୍ରୋତକୁ ପୋଲିସ୍‌ ବା କିପରି ସମ୍ଭାଳି ପାରିବ ସାମାନ୍ୟ କେତୋଟି ଲାଠିରେ ? ଚାରିଆଡ଼େ ବିଭ୍ରାଟ ସୃଷ୍ଟି ହେଲା ।

ଏହାପରେ ଥାନା ଅଫିସରଙ୍କ ଇଙ୍ଗିତରେ କଳ୍ପବର ନେତା ଲକ୍ଷ୍ମଣ ନାୟକଙ୍କୁ ପୋଲିସମାନେ ଟାଣି ଓଟାରି ନେଇଗଲେ ଥାନା ସାମନାକୁ । ସମସ୍ତଙ୍କୁ ଦେଖିଲା ପରି ଏକ ସ୍ଥାନରେ ଠିଆ କରାଇ ଲକ୍ଷ୍ମଣଙ୍କୁ ଗୋଗୋଡ଼ା ବାଡେଇଲେ । ସେ ତଳେ ପଡ଼ିଗଲେ । ତଥାପି ମାଡ଼ ବନ୍ଦ ହେଲା ନାହିଁ । ଦୁଇ ଜଣ ତାଙ୍କୁ ମାଡ଼ ବସିଲେ । ଆଉ ଜଣେ ତାଙ୍କ ଖାର କେଶ (ନିଶ)କୁ ପୋଡ଼ିବାରେ ଲାଗିଲେ । ଲକ୍ଷ୍ମଣ ଯନ୍ତ୍ରଣାରେ ଛଟପଟ ହେଲେ । ତାଙ୍କ ନିଶରେ ଶେଷରେ ନିଆଁ ଲାଗିଗଲା ।

ପୋଲିସ୍‌ର ଉଦ୍ଦେଶ୍ୟ ଥିଲା, ନେତା ଲକ୍ଷ୍ମଣ ନାୟକଙ୍କ ଉପରେ ମାଡ଼ ଦେଖି ଉପସ୍ଥିତ ଜନତା ଛତ୍ରଭଙ୍ଗ ହେବେ । କିନ୍ତୁ ଫଳ ଓଲଟା ହେଲା । କର୍ମୀମାନେ ବାଉଁଶ ବାଡ଼ ଠେଲି ଭିତରକୁ ପଶିବାରେ ଲାଗିଲେ । ଧସ୍ତାଧସ୍ତିରେ କେତେଜଣ କନଷ୍ଟେବଲ ଓ ପିଅନ ତଳେ ପଡ଼ିଗଲେ । ଏଥିରେ ପୋଲିସବାହିନୀ ଉତ୍ତ୍ୟକ୍ତ ହୋଇ ଗୁଳିଚାଳନା କଲେ । ଫାଙ୍କା ଆୱାଜ ହେଲା । ଦେଖଣାହାରୀମାନେ ପ୍ରାଣ ଭୟରେ ଯେ ଯୁଆଡ଼େ ଧାଇଁ ପଳାଇଲେ । ତଥାପି କର୍ମୀମାନେ ବୀର ଦର୍ପରେ ଆଗେଇଲେ ଥାନା ଭିତରକୁ । ଟିମସଗୁଡ଼ାର ଲିଙ୍ଗ ଭୂମିଆ ତ୍ରିରଙ୍ଗା ପତାକା ଧରି ଥାନା ଛାତ ଉପରକୁ ଚଢ଼ିଲେ । କିନ୍ତୁ ପତାକାକୁ ଛାତ ଉପରେ ଲଟକାଇ ଦେବା ପୂର୍ବରୁ ପୋଲିସର ଗୋଟିଏ ଗୁଳି ତାଙ୍କ ମୁଣ୍ଡ ଉପରେ ବାଜିଲା । ସେ ପତାକା ସହ ତଳେ ଢଳିପଡ଼ିଲେ । ସଙ୍ଗେ ସଙ୍ଗେ ତାଙ୍କଠାରୁ ପତାକାଟି ଟେକି ନେଲେ ସରଗିଗୁଡ଼ାର ନକୁଳ ମାଡ଼କାମୀ । ସେ ଛାତ ଉପରେ ଚଢ଼ୁଛନ୍ତି ଏ ସମୟରେ ବାଜିଲା ଗୋଟିଏ ଗୁଳି ତାଙ୍କ ଛାତିରେ । ସେ ମଧ୍ୟ ତଳେ ଢଳି ପଡ଼ିଲେ ।

ଘନ ଘନ ଗୁଳିଚାଳନା ଆରମ୍ଭ ହୋଇଗଲା ନିରସ୍ତ୍ର ଜନତା ଉପରେ । ଗୋଟି ଗୋଟି ହୋଇ ଗଡ଼ିପଡ଼ିଲେ ମାତିଲି ଥାନା ସମ୍ମୁଖସ୍ଥ ରାସ୍ତା କଡ଼ରେ । ମଞ୍ଜାରିଗୁଡ଼ାର ସମରାୟ ନାୟକ, ସାନ ଗୁମ୍ମାର ଗୋପୀ ମୃନାକ୍ଷି, କଆଙ୍ଗର କେନ୍ଦ୍ରେ ସୁନା ଝରିଆ, ଟିମସପୁଟ୍‌ର ସୁର୍‌ କୋଟିଆ, ବଇସଖା ଘାଟର ଜଦୁନାଥ ଓଡ଼, ଟେମୁରପାଲ୍ଲୀର ବଳରାମ ଭୂମିଆ ଏମିତି ଆହୁରି ଅନେକ ବ୍ୟକ୍ତି ନିମିଷକେ ଉଡ଼ିଗଲା ସେମାନଙ୍କ ପ୍ରାଣବାୟୁ । ଭାରତୀୟ ସ୍ୱାଧୀନତା ପାଇଁ ଅନ୍ୟ ଉପରେ ହାତ ମୁଠା ନ ଉଠାଇ ଶହୀଦତ୍ୱ ବରଣ କରିନେଲେ ଏହି ବୀରପୁଙ୍ଗବମାନେ ତୁଣ୍ଡରେ ଜନ୍ମଭୂମିର ଜୟଗାନ କରି କରି ।

ନୂଆଗୁଡ଼ାର ନରସିଂହ ଡ଼ମ୍ବଙ୍କ ପେଟରେ ବିଦ୍ଧ ହେଲା ଗୋଟିଏ ଗୁଳି । କୁଡ଼ୁସଗୁଡ଼ାର ଅର୍ଜୁନ କୁଟିଆଙ୍କ ପେଟରେ ବୟୁନଟ୍ ମାଡ଼

ବସିଲା ଯେ ତାର ଅନ୍ତପୁଟୁଳା ବାହାରି ପଡ଼ିଲା । ସେମାନେ ମରଣ ଯନ୍ତ୍ରଣାରେ ଛଟପଟ ହେଲେ । ସଙ୍ଗେ ସଙ୍ଗେ ସେମାନଙ୍କ ପ୍ରାଣବାୟୁ ଉଡ଼ିଯାଇ ନଥିଲା ।

ଗୃହଆଡ଼େ ରକ୍ତର ହୋରିଖେଳ । କାହାର ହାତ ଭାଙ୍ଗିଲା ତ କାହାର ଗୋଡ଼ ଅକାମୀ ହୋଇଗଲା । କାହା ମୁଣ୍ଡରୁ ରକ୍ତ ଝର ଝର ହୋଇ ଝରି ପଡ଼ୁଥାଏ । କିଏ ତଳେ ପଡ଼ି ଯନ୍ତ୍ରଣାରେ ଛଟପଟ ହେଉଥାଏ । ଲକ୍ଷ୍ମଣଙ୍କ ଶଳା ବନସିଂ ମୁଦୁଲିଙ୍କ ଗୋଟିଏ ଭୁଜ ଗୁଣ୍ଡା ହୋଇ ଯାଇଥାଏ । ଝଡ଼ଝଞ୍ଜା ଭିତରେ ଏପରି ଗୋଟିଏ ହେଲେ କର୍ମୀ ନଥିଲେ ଯେ କ୍ଷତବିକ୍ଷତ ନ ହୋଇଛି ।

ଦୁ' ଜଣ ପୋଲିସ୍ ଗୁଳି ଚଳାଉଛନ୍ତି । ବାଡ଼ ଗୃହପଟେ ଫରେଷ୍ଟ ଗାର୍ଡ଼ ଓ ଅନ୍ୟାନ୍ୟ ପାଇକ ବାଉତମାନେ ଲାଠି ପ୍ରହାର କରିବାରେ ବ୍ୟସ୍ତ । ଫରେଷ୍ଟ ଗାର୍ଡ଼ ଜି. ରାମାସ୍ୱାମୀ ମଦ ଟୁଳୁ ଟୁଳୁ ହୋଇ ଇତସ୍ତତଃ ଭାଦ ବୁଲାଇ, ଲାଠି ଚାଳନା କରୁଛି କୁହାଟ ଗୁଡି । ଏହି ଗଣ୍ଡଗୋଳ ଭିତରେ ସେ ମୁଣ୍ଡରେ ଆଘାତ ପାଇ ଟଳି ପଡ଼ିଲା । ଦେଖଣାହାରୀମାନେ କହନ୍ତି ଯେ ପୋଲିସ୍‌ର ଗୁଳିରେ ତା ଜୀବନ ଗଲା ।

ଏଣେ ଥାନା ବାରଣ୍ଡାରେ ଲକ୍ଷ୍ମଣ ଭୀଷଣ ଯନ୍ତ୍ରଣାରେ ଗଡ଼ୁଥାଆନ୍ତି । ଦରଦଭରା ହୃଦୟରେ ମଧ୍ୟ ସେ ଦେଖୁଥାନ୍ତି ତାଙ୍କର କେତେ ବନ୍ଧୁ ସହୋଦର ଟଳି ପଡୁଛନ୍ତି । କ୍ରମେ ଜନତା ପତଳା ପଡ଼ି ଯାଉଛି । ଅନେକ ଭୂତଳଶାୟୀ । ବଳକା ଲୋକେ କ୍ଷତବିକ୍ଷତ ଦେହରେ ଛିନ୍ନ ଛତର୍ ହୋଇ ପଳାଇ ଯାଉଛି । ଶେଷରେ କେତେ ଜଣ ପୋଲିସ୍ ଲକ୍ଷ୍ମଣଙ୍କ ପାଖକୁ ଯାଇ ପୈଶାଚିକ ଅଟ୍ଟହାସ୍ୟ କରିବାରେ ଲାଗିଲେ । ଜଣେ ପୋଲିସ୍ ଲକ୍ଷ୍ମଣଙ୍କ ମୁହଁକୁ ବନ୍ଧୁକର ବୟୁନଟ୍‌ରେ ଆଘାତ କଲା । ଏଥିରେ ଲକ୍ଷ୍ମଣ ବେହୋସ ହୋଇ ପଡ଼ିଲେ । ପୋଲିସ ଭାବିଲେ ଲକ୍ଷ୍ମଣ ମୃତ । ବନ୍ଧୁ ହନର ଶତ୍ରୁ ନିପାତ ହେବାରୁ ମନର ଓଲମାନା ମେଣ୍ଟିଗଲା ଯେପରି । ମହୋଲ୍ଲାସରେ ସେମାନେ ଲକ୍ଷ୍ମଣଙ୍କୁ ଭୂଇଁରେ ଘୋଷାରି ନେଲେ ରାସ୍ତାଯାକେ । ପୋଲ ପାଖ ନର୍ଦ୍ଦମାରେ ତାଙ୍କୁ ଫୋପାଡ଼ ଦେଲେ ।

ଘଣ୍ଟାଏ ଦୁଇ ଘଣ୍ଟା ଭିତରେ ଏତେ ଦିନର ଉଦ୍‌ବେଗ ଉତ୍ତେଜନା ଶେଷ ହୋଇଗଲା । ମାଥିଲି ଥାନା ଆଗରେ କୁଡ଼ କୁଡ଼ ମଡ଼ ଇତସ୍ତତଃ ହୋଇ ପଡ଼ିରହିଲା । ଆହତଙ୍କର କ୍ରନ୍ଦନ ଧ୍ୱନି ଘରଆଡ଼ରୁ ଭାସି ଆସୁଥାଏ । ପୋଲିସ୍ ଭୟରେ ମୃତାହତଙ୍କୁ ସ୍ଥାନାନ୍ତରିତ କରିବାକୁ ମଧ୍ୟ କେହି ଭରସି ପାରିଲେ ନାହିଁ ।

ଖାଲି ଥାନା କାହିଁକି, ମାଥିଲି ସାରା ହୋଇଗଲା ଶ୍ମଶାନ୍ । ଭୟରେ ଲୋକେ କବାଟ କିଳି ରହିଲେ । ମାଥିଲି ବାଟ ବନ୍ଦ ହୋଇଗଲା । ଘରଆଡ଼େ ମାରବାଡ଼ା । କୋଳାହଳ ଦୋହାଟିଗଲା ।

ପୋଲିସ୍ ଗାର୍ଡ ରମାସ୍ୱାର ମୃତ୍ୟୁରେ ପୋଲିସ୍ ଅଫିସରମାନେ ଖୁବ ମର୍ମାହତ । ରାଜ କର୍ମଚାରୀ । ତାର ମୃତ୍ୟୁ କମ୍ କଥା ନୁହେଁ । ଏହାର ସଠିକ୍ ପ୍ରତିଶୋଧ ନ ନେଲେ ଅନ୍ୟ ପୋଲିସ୍‌ଙ୍କ ମନୋବଳ ଭାଙ୍ଗିଯିବ । ତେଣୁ ତାକୁ ଜନତା ଉତ୍ତ୍ୟକ୍ତ ହୋଇ ମାରିନେଲେ ବୋଲି ପ୍ରମାଣ କରିବାକୁ ହେବ । ପୋଲିସ୍ ଲାଗିଗଲେ ସେଇ କାମରେ । ଡାକ୍ତରଙ୍କୁ ଡକା ହୋଇ ସାର୍ଟିଫିକେଟ୍ ଯୋଗାଡ଼ ହେଲା । ଡାକ୍ତର ଲେଖିଲେ ରାମାସ୍ୱାର ମୃତ୍ୟୁ ହୋଇଛି ମୁଣ୍ଡରେ ଠେଙ୍ଗାମାଡ଼ ଯୋଗୁଁ । ଡାକ୍ତରଖାନାରେ ମୃତାବସ୍ଥାରେ ପଡ଼ିଥିବା ନରସିଂହ ଡମ୍ବ ଅର୍ଜୁନ କୁନିଅଠାରୁ ମୃତ୍ୟୁକାଳୀନ ଜମାନ ବନ୍ଦୀ ଲେଖାଇ ନିଆଗଲା ଯେ ସେମାନେ ମାଥିଲି ଥାନା ପୋଡ଼ିବାକୁ ଆସିଥିଲେ । ତା ପରେ ଲୋକଙ୍କୁ ଖୋଜା ଚାଲିଲା ଗିରଫ କରିବାକୁ । କିନ୍ତୁ ସେତେବେଳକୁ ଗିରଫ କରିବା ପାଇଁ ମାଥିଲିରେ କେହି ନଥିଲେ ।



# ଚଉଦ

ଅନ୍ଧାର ! ଘନଘୋର ରାତି ! ବର୍ଷାକାଳ !

ଝିପି ଝିପି ବର୍ଷା ପଡୁଥାଏ ।

ଶୀତଳ ପବନ ଲକ୍ଷ୍ମଣ ଦେହରେ ସଞ୍ଚର ଗଲା । ବହୁ ସମୟର ଅଚେତନା ପରେ ସେ ଚେଇଁ ଉଠିଲେ । ଦେହରେ ଭୀଷଣ ଦରଜ । ମୁଣ୍ଡ ଫୋଡ଼ୁଛି । ଚାରିଆଡ଼େ ଅନ୍ଧାର । ଭାବିପାରିଲେ ନାହିଁ ସେ କେଉଁଠାରେ ? କେଉଁ ଅନ୍ଧାରି ରାଇଜରେ ସେ ପଡ଼ିଅଛନ୍ତି ? ତାଙ୍କୁ କିଏ ଏଠାକୁ ଆଣିଛି ? କୁଆଡ଼େ ଗଲେ ତାଙ୍କର ବନ୍ଧୁ ସହୋଦରମାନେ ?

ଆଉ କିଛି ଭାବି ପାରିଲେନି ସେ । ଦେହଟା ବ ଢୋଲ ମାରିବା ଉପରେ । ଯେଉଁ ଭୂଇଁରେ ସେ ପଡ଼ିଛନ୍ତି ତାହା ପାଣିରେ ସନ୍ସନ୍ । ଆକାଶରୁ ଝିପି ଝିପି ବର୍ଷା ପଡ଼ୁଛି । କୋହଲା ପବନ ପିଟୁଛି ।

ବହୁ କଷ୍ଟରେ ଲକ୍ଷ୍ମଣ ବସି ଉଠିଲେ । ଚାରିଆଡ଼କୁ ଭଲ ରୂପେ ଚାହିଁଲେ କିଛି ହେଲେ ଦିଶୁନାହିଁ, କେବଳ ମାଡ଼ଲ ଥାନା ଗୃହ ଭିତରୁ ଲଣ୍ଠନର ମିଞ୍ଜି ମିଞ୍ଜି ଆଲୁଅ ଦିଶୁଛି । କେହି କୁଆଡ଼େ ନାହିଁ । ବୋଧହୁଏ ପୋଲିସ୍‌ମାନେ ମଧ୍ୟ ଶୋଇ ପଡ଼ିଛନ୍ତି ।

ଲକ୍ଷ୍ମଣ ସ୍ୱସ୍ତିରେ ନିଃଶ୍ୱାସ ମାରିଲେ । ଯାହାହେଉ ସେ ମାଡ଼ଲ ଥାନା ପାଖରେ ପଡ଼ିଛନ୍ତି । ଆଶ୍ଚର୍ଯ୍ୟ ହେଲେ ଯେ, ଏତେବେଳେ ଯାଏଁ ଚେତନାଶୂନ୍ୟ ହୋଇ ସେ କପରି ପଡ଼ିଥିଲେ ? ଦିନବେଳେ ଥାନା

ବାରଣ୍ଡା ଉପରେ ଯନ୍ତ୍ରଣାରେ ଛଟପଟ ହେଉଥିବେଳେ ସେ ଦେଖିଛନ୍ତି ଅନେକ ସହକର୍ମୀ ମରିଛନ୍ତି, ଅନେକ କ୍ଷତବିକ୍ଷତ । ତା ପରେ କଣ ହେଲା ସେ ତ ଜାଣି ନାହାନ୍ତି । ନିଶ୍ଚୟ ଆଜି କେତେ ଜଣ ବି ମରିଥିବେ ।

ହଠାତ୍ ଲକ୍ଷ୍ମଣଙ୍କର ମନେ ପଡ଼ିଲା ମହାତ୍ମା ଗାନ୍ଧୀଙ୍କ "କର ବା ମର" ଆହ୍ୱାନ । ତାଙ୍କର ବାଣୀ କାର୍ଯ୍ୟକାରୀ କରୁ କରୁ ଅନେକ ବନ୍ଧୁ ଆଜି ମଲେ । ଧନ୍ୟ ସେମାନେ । ଗାନ୍ଧୀଙ୍କର ସେଇମାନେ ହିଁ ଉପଯୁକ୍ତ ଶିଷ୍ୟ । ଭାରତମାତାର ସେମାନେ ଯୋଗ୍ୟ ସନ୍ତାନ ।

କିନ୍ତୁ ସେ ? ମରିଥିଲେ ତ ଧନ୍ୟ ହୋଇଥାନ୍ତେ । କିନ୍ତୁ ଯେହେତୁ ସେ ଜୀବିତ । ତେଣୁ ମହାତ୍ମା ଗାନ୍ଧୀଙ୍କ ପ୍ରକୃତ ଶିଷ୍ୟ ହେବା ପାଇଁ ତାଙ୍କୁ ଆହୁରି ଅନେକ କଷ୍ଟ କରିବାକୁ ପଡ଼ିବ । ବିଶ୍ରାମର ପ୍ରଶ୍ନ ନାହିଁ କି ଯେ ମଲେ ତା ପାଇଁ ବାହୁନି ହେବାକୁ ସମୟ ନାହିଁ । ଯେଉଁ ଲକ୍ଷ୍ୟ ହାସଲ ପାଇଁ ଏତେଗୁଡ଼ାଏ ଅମୂଲ୍ୟ ରତ୍ନ ସଂସାରରୁ ବିଦାୟ ନେଲେ ସେମାନଙ୍କର ଅଭିଳାଷ ଚରିତାର୍ଥ କରିବା ପାଇଁ ଆହୁରି ଅନେକ କାର୍ଯ୍ୟ କରିବାକୁ ପଡ଼ିବ ।

"କର ବା ମର" ମୁହୁର୍ମୁହୁ ପ୍ରତିଧ୍ୱନିତ ହେଲା । ଏଇ ଦୁଇଟି ପଦ ତାଙ୍କ ହୃଦୟ ଭିତରେ । କଣ ଏବେ ସେ ତା ହେଲେ କରିବେ ? ୨୧ ତାରିଖରେ ଯାହା କରିବାକୁ ଥିଲା ସେ ସବୁ ହୋଇସାରିଛି । ତା ପରେ କଣ କରିବାକୁ ହେବ ସେ ତ ଜାଣି ନାହାନ୍ତି । ଘରକୁ ତା ହେଲେ ସେ ଫେରିଯିବେ ? କଂଗ୍ରେସର ଅନ୍ୟାଦେଶ ପର୍ଯ୍ୟନ୍ତ ଘରେ ବିଶ୍ରାମ ନେବେ ?

ପରମୁହୂର୍ତ୍ତରେ ଭାବିଲେ ଘରକୁ ଯାଇ ବା କି ଲାଭ । ସ୍ୱରାଜ ତ ମିଳି ନାହିଁ କଣ ଧରି ସେ ଗାଁକୁ ଯିବେ ? ଏତେ ଲୋକ ଯେଉଁ ପ୍ରାଣ ଦାନ ଦେଲେ ତାଙ୍କର ଶୋକସନ୍ତପ୍ତ ପରିବାରକୁ ସେ କେଉଁ ଭାଷାରେ ଆଶ୍ୱାସନା ଦେବେ ? ନା, ସେ ଏଠୁ ଘରକୁ ଫେରିବେ ନାହିଁ କି ବିଶ୍ରାମ ନେବାର ପ୍ରଶ୍ନ ହିଁ ନାହିଁ ।

ସେଇ ଭୟଙ୍କର ଅନ୍ଧାର ରାତି ଓ ଯନ୍ତ୍ରଣାଭରା ଦେହରେ ଲକ୍ଷ୍ମଣ ନାୟକ ସ୍ଥିର କଲେ, ସେ ଏବେ ଜୟପୁର ଯାଇ କଂଗ୍ରେସ ଅଫିସରୁ ବୁଝି ଆସିବେ ତାଙ୍କର ପରବର୍ତ୍ତୀ କାର୍ଯ୍ୟ କ'ଣ ହେବ ? ଧୀରେ ଧୀରେ ସନ୍ତର୍ପଣରେ ଉଠି ଠିଆ ହେଲେ ଲକ୍ଷ୍ମଣ । ଦେହରେ ଭୀଷଣ ପୀଡ଼ା । ସେ ନିଜେ ତ ଜଣେ ଡିଶାରି । କେଉଁ ଗଛର ପତ୍ର ଏବେ ତାଙ୍କ ଯନ୍ତ୍ରଣା ଉପଶମ କରିପାରେ ସେ ଜାଣନ୍ତି । କେଉଁଠି ସେ ଗଛ ଥାଏ, ତା ବି ସେ ଜାଣନ୍ତି ।

ଚାଲିଲେ ଲକ୍ଷ୍ମଣ । ଅନ୍ଧକାର ଭିତରେ ସେ କେତେ ସହକର୍ମୀଙ୍କ ମଡ଼ାକୁ ଝୁଣ୍ଟାଇଲେ । କେଉଁ ବନ୍ଧୁର ସେ ପିଣ୍ଡ ଜଣାପଡୁ ନାହିଁ । ଯାହାକୁ ଝୁଣ୍ଟିଲେ ତାକୁ ମୁଣ୍ଡ ଲଗାଇ ପ୍ରଣିପାତ କଲେ । ଆତ୍ମାର ସଦ୍‌ଗତି ପାଇଁଲେ । ଗ୍ଳାନି ତାଙ୍କର କୋହରେ ଭରି ଉଠିଲା । କିନ୍ତୁ ଅଶ୍ରୁପାତ କରିବାକୁ ବା ବେଳ କାହିଁ । ଆଗରେ କର୍ତ୍ତବ୍ୟର ଡାକରା ହାତଠାରି ଡାକୁଛି ।

ବଣୁଆ ରାସ୍ତାରେ ମାଥିଲିଠାରୁ ଜୟପୁରର ଦୂର ୩୫ ମାଇଲ୍ ହେବ । ସେତକ ବାଟ ପାର ହେବାକୁ ପଡ଼ିବ ।

ଅଗଷ୍ଟ ବାଇଶ ତାରିଖର ସେଇପରି ଏକ ଅନ୍ଧକାରମୟ ନିଶାରାତି । ସମୟ ପ୍ରାୟ ବାରଟା କି ଗୋଟାଏ ହେବ । ଲକ୍ଷ୍ମଣ ନାୟକ ଜୟପୁର କଂଗ୍ରେସ ଅଫିସକୁ ଆସିଲେ । ଅଫିସଟି ଶୂନ୍ୟ । ବାହାରେ ତାଲା ପଡ଼ିଛି । ତହୁଁ ଲକ୍ଷ୍ମଣ ଚାଲିଲେ ତାଙ୍କ ପରିଚିତ ସହକର୍ମୀଙ୍କ ଘରକୁ ଘର । କେହି ହେଲେ ଘରେ ନାହାନ୍ତି । ଲକ୍ଷ୍ମଣଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ଏତେ ବଡ ସହରରେ କେହି ଜଣେ ହେଲେ ବନ୍ଧୁ ନାହାନ୍ତି କାହିଁକି ? କାହିଁକି ଆଜ ଜୟପୁର ଏତେ ନିର୍ଜନ । ସେ ଏବେ କାହାଠୁ ପରବର୍ତ୍ତୀ କାର୍ଯ୍ୟର ନିର୍ଦ୍ଦେଶ ପାଇବେ ?

ଜୟପୁରରେ ମଧ୍ୟ କିଛି ଦୁର୍ଘଟଣା ଘଟିଗଲା କି ?

ପ୍ରକୃତରେ ପୂର୍ବଦିନ ଅର୍ଥାତ୍ ଅଗଷ୍ଟ ୨୧ ତାରିଖରେ ସାରା ଜିଲ୍ଲାରେ ତାଣ୍ଡବର ଲୀଳା ଖେଳି ଯାଇଥିଲା । ଜୟପୁର ସହରରେ ହଜାର ହଜାର ଲୋକ ବିକ୍ଷୋଭ ପାଇଁ ଶୋଭାଯାତ୍ରାରେ ବାହାରି ଥିଲେ ।

ଥାନା ଆଗରେ କର୍ମୀଙ୍କ ଉପରେ ଲାଠିମାଡ଼ ହେଲା । ଅନେକ କର୍ମୀଙ୍କୁ ବନ୍ଦୀ କରାଗଲା । ସବୁଠାରୁ ବେଶୀ ବୀଭତ୍ସ ହୋଇଗଲା ପାପଡ଼ାହାଣ୍ଡିର ବିକ୍ଷୋଭ ଅଭିଯାନ । ଦୂର ଦୂରାନ୍ତରୁ କର୍ମୀମାନେ ଶୋଭାଯାତ୍ରାରେ ଯୋଗ-ଦେବା ପାଇଁ ଆସୁଥିଲାବେଳେ ପାପଡାହାଣ୍ଡି ନିକଟସ୍ଥ ତିକଲି ନଦୀ ପାଖରେ ପୋଲିସ୍ ସେମାନଙ୍କୁ ବାଧା ଦେଲେ । ଉତ୍ତେଜନା ବୃଦ୍ଧି ପାଇଲା । ଶେଷରେ ପୋଲିସ୍ ନିରସ୍ତ୍ର ଜନତା ଉପରେ ଗୁଳି ଗୁଳନା କଲା । ଅନେକେ ସେଠାରେ ଟଳି ପଡ଼ିଲେ । ଅନ୍ୟମାନେ ପ୍ରାଣ ବିକଳରେ ନଦୀରେ ଡେଇଁ ପଡଥିଲେ । ସେତେବେଳେ ନଦୀରେ ପ୍ରବଳ ବନ୍ୟା, ପ୍ରଖର ସ୍ରୋତ । ସେମାନେ ସେ ବନ୍ୟାରେ ସଳିଳ ସମାଧି ଲଭିଲେ । ଅନ୍ୟୁନ ଅଶୀ ଜଣ ସେ ଦିନ ପ୍ରାଣ ହରାଇଥିଲେ । ଗୁରିଆଡ଼େ ଏମିତି ବିଭ୍ରାଟ । ମୃତାହତଙ୍କ ଖବର ଜାଣିବା ବି କଷ୍ଟକର ହୋଇପଡ଼ୁଛି । ସାଧାରଣ ଜନତା ଭୟରେ ଜଡ଼ସଡ଼ । ତା ସଙ୍ଗକୁ ପୋଲିସ୍‌ର ଦମନ । ଏ ପରିସ୍ଥିତିରେ ସମସ୍ତେ କବାଟ କିଳି ଘରେ ରହିଲେ । ନେତାମାନଙ୍କର ଆତ୍ମଗୋପନ କରିବା ଛଡ଼ା ଅନ୍ୟ ବାଟ ନଥିଲା ।

ସ୍ୱାଧୀନତା ସଂଗ୍ରାମରେ ଭାରତରେ ଏହିପରି ଲୋମହର୍ଷଣକାରୀ କାଣ୍ଡ, ଜାଲିଆନାୱାଲାବାଗ୍ ହତ୍ୟାଛଡା ଆଉ କେଉଁଠି ଘଟିଥିବାର ଉଦାହରଣ ନାହିଁ ।

ଏ ସବୁ ଲକ୍ଷ୍ମଣ ନାୟକ ବା ଜାଣିବେ କିପରି ?

ସେଇ ମଧ୍ୟରାତ୍ରରେ ଜୟପୁରର ରାସ୍ତାକୁ ରାସ୍ତା ଇତସ୍ତତଃ ବୁଲୁଥିଲା ବେଳେ ଜଣେ ଦେଶାନୁରାଗୀ ବଂକ୍ତି ଲକ୍ଷ୍ମଣଙ୍କୁ ଚିହ୍ନି, ତାଙ୍କୁ ନିଜ ଘରକୁ ନେଇଗଲେ ଏବଂ ଦୋତାଲା ଉପରେ ଗୋଟିଏ ବଖରା ବିଶ୍ରାମ ପାଇଁ ଛାଡ଼ି-ଦେଲେ । ତାଙ୍କ ଖବର ବୁଝିବା ପାଇଁ ନିକଟରେ ରହୁଥିବା ଜଣେ କଂଗ୍ରେସ କର୍ମୀ ଶ୍ରୀ ବଳଭଦ୍ର ପୂଜାରୀଙ୍କୁ ଡ଼ାକି ଆଣିଲେ । ବଳଭଦ୍ର ବାବୁ ଲକ୍ଷ୍ମଣଙ୍କୁ ଚିହ୍ନନ୍ତି । କିନ୍ତୁ ସେ ଏ ନିଶାର୍ଦ୍ଧରେ ଲକ୍ଷ୍ମଣଙ୍କ ନାମ ଶୁଣିଲା ମାତ୍ରେ ଚମକି ପଡ଼ିଲେ ।

କେବଳ ବଳଭଦ୍ର କାହିଁକି ୨୨ ତାରିଖ ସକାଳୁ ସମଗ୍ର ଜିଲ୍ଲା ଚମକି ପଡିଥିଲା ଲକ୍ଷ୍ମଣଙ୍କ ଦୁଃସାହସିକ କାର୍ଯ୍ୟର ବର୍ଣ୍ଣନା ଶୁଣି । ପୋଲିସ୍

ବାଲିଏ ଲକ୍ଷ୍ମଣଙ୍କୁ ମରିଗଲା ବୋଲି ଭାବି ତ ରାସ୍ତାକଡ଼ ନାଳରେ ପକାଇ ଦେଇଥିଲେ । କିନ୍ତୁ ସକାଳୁ ଦେଖାଗଲା ଲକ୍ଷ୍ମଣ ନାୟକ ନାହାନ୍ତି । ଚାରିଆଡ଼େ ଖୋଜା ଚାଲିଲା ଲକ୍ଷ୍ମଣଙ୍କୁ, କିନ୍ତୁ କେହି ତାଙ୍କୁ ପାଇଲେ ନାହିଁ । ଏତେ କ୍ଷତବିକ୍ଷତ ଦେହକୁ ଧରି ଲକ୍ଷ୍ମଣ କିପରି କୁଆଡ଼େ ଚାଲିଗଲେ ସେଥିରେ ଚକିତ ହେଲେ ପୋଲିସ୍ । ଲକ୍ଷ୍ମଣଙ୍କ ବୀରତ୍ୱ ଓ ଦୁର୍ଦ୍ଦାନ୍ତପଣିଆର ପ୍ରମାଣ ମିଳିଗଲା । ଏପରି ଲୋକକୁ ସ୍ୱାଧୀନ ଭାବେ ଛାଡ଼ିଦେଲେ ସେ ସରକାରକୁ ଆହୁରି ଅନେକ ଅସୁବିଧାରେ ପକାଇବ । ତେଣୁ ସରକାର ତରଫରୁ ଚାରିଆଡ଼େ ପ୍ରଚାର କରାଗଲା—"ଫିତୁରଦାର (ବିପ୍ଳବୀ) ଲକ୍ଷ୍ମଣ ନାୟକ ଫେରାର୍ । ତାଙ୍କୁ ଯେଉଁଠି ଦେଖ ବନ୍ଦୀ କର ।"

ଦୋଚାଲା ଉପରେ ଶ୍ରୀ ବଳଭଦ୍ର ପୂଜାରୀ ଦେଖିଲେ ଯେ ଗୋଟିଏ ଅନ୍ଧାର ବଖରାରେ ଦୀପଟିଏ ମିଞ୍ଜି ମିଞ୍ଜି ହୋଇ ଜଳୁଛି । ଲକ୍ଷ୍ମଣ ନାୟକ ଜାନୁପାତ କରି ଆଖିବୁଜି ପ୍ରାର୍ଥନା କଲା ଢଙ୍ଗରେ ବସିଛନ୍ତି । ତାଙ୍କୁ ଚିହ୍ନି ହେଉ ନାହିଁ, ମୁହଁ ଫୁଲି ଯାଇଛି, ଓଠମାନ ଗୋଳିଆ ହୋଇ ଆଗକୁ ଚାଲି ଆସିଛି । ଦେହର ନାନା ସ୍ଥାନ କ୍ଷତବିକ୍ଷତ । ନଖ ଭୋଡ଼ି ଯାଇଛି । ମୁହଁ ଓ ଦେହରେ କୌଣସି ପତ୍ରର ରସ ଲେପନ ହୋଇଛି । ଏସବୁ ସତ୍ତ୍ୱେ ଲକ୍ଷ୍ମଣଙ୍କର ମୁହଁରେ ଯନ୍ତ୍ରଣାର ଛାୟା ନାହିଁ । ବଳଭଦ୍ରଙ୍କ ଆଖି ଲୁହରେ ଭରିଗଲା ।

ବଳଭଦ୍ର ଲକ୍ଷ୍ମଣଙ୍କୁ ପଚାରିଲେ—'ଲକ୍ଷ୍ମଣ, ତୁମ ମୁହଁ ଏମିତି ହୋଇଛି କାହିଁକି ? ଲକ୍ଷ୍ମଣ ସଂକ୍ଷେପରେ ତାଙ୍କୁ ପୂର୍ବଦିନର ଘଟଣାମାନ କହିଥିଲେ । ନିଜେ ଜଣେ ଡିଶାରି ହୋଇଥିବାରୁ ସେ କିପରି ବଣରୁ ପତ୍ରର ରସ ଲଗାଇ ଏବଂ କିଛି ଚେର ଚୋବାଇ ଚାଲି ଆସିଛନ୍ତି ସେ ସବୁ ମଧ୍ୟ କହିଲେ ।

ଲକ୍ଷ୍ମଣ ସାମାନ୍ୟ କିଛି ଭୋଜନ କରି ସାରିଲା ପରେ ପଚାରିଲେ, 'ଏହା ପରେ କ'ଣ କରାଯିବ ? ମହାତ୍ମା ଗାନ୍ଧୀ କ'ଣ ନିର୍ଦ୍ଦେଶ ଦେଇଛନ୍ତି ?'

ଏହା'ର ଉତ୍ତର ଲକ୍ଷ୍ମଣଙ୍କୁ କ'ଣ ଦିଆଯିବ ? ସେତେବେଳ ପର୍ଯ୍ୟନ୍ତ ସେ ଶୁଣିନାହାନ୍ତି ଯେ ସେ ଆଜି ସାଧାରଣ ନାଗରିକ ହୋଇନାହାନ୍ତି ।

ସରକାରଙ୍କ ଚକ୍ଷୁରେ ସେ ଜଣେ ଫେରାରକ ଆସାମୀ । ତାଙ୍କୁ ଚାରିଆଡେ ଖୋଜା ଚାଲିଛି । ସେ ଏବେ ଆଉ ପୂର୍ବପରି ଖୋଲି ଖୋଲି ଭାବେ ବୁଲି ମଧ୍ୟ ପାରିବେ ନାହିଁ । ସେ ନିଜକୁ ଗୁପ୍ତରେ ହିଁ ରଖିବାକୁ ହେବ ।

ଦୁଃଖଦାୟକ ହେଲେ ମଧ୍ୟ ଲକ୍ଷ୍ମଣଙ୍କୁ ତାଙ୍କ ନିଜ ବିଷୟରେ ଉପରୋକ୍ତ କଥା କୁହାଗଲା ।

—'ବର୍ତ୍ତମାନ କୁହ, କଂଗ୍ରେସ ପାଇଁ ମୁଁ ଏବେ କ'ଣ କରିବି ?' ଲକ୍ଷ୍ମଣ ପଚାରିଲେ ।

ବର୍ତ୍ତମାନ ପରିସ୍ଥିତିରେ ଆତ୍ମଗୋପନ ଛଡ଼ା ଆଉ ସେ ଅଧିକା କ'ଣ କରିବେ ? ସେ ବଞ୍ଚି ରହିଲେ ସିନା କଂଗ୍ରେସ ପାଇଁ କାମ କରିବେ । ଏଣେ ଜୟପୁର ସହରରେ ରହିବା ମଧ୍ୟ ନିରାପଦ ନୁହେଁ । ଚାରିଆଡ଼େ ପୋଲିସ୍‌ର ତନାଘନା । ଏକମାତ୍ର ଉଚିତ ଆଶ୍ରୟସ୍ଥଳ ହେବ ସେହି ରାମଗିରି ଓ ଚେନ୍ନୁଲଗୁମ୍ମାର ବଣ ପାହାଡ଼ ।

ଲକ୍ଷ୍ମଣଙ୍କୁ କୁହାଗଲା ଯେ ସେ ତୁରନ୍ତ ଅନ୍ୟ ଏକ ରାସ୍ତା ଧରି ଆପଣା ଗାଁକୁ ଚାଲିଯା'ନ୍ତୁ । ସେଠି ପୋଲିସ୍ ନଜରରୁ ଦୂରରେ କିଛି ଦିନ ଆତ୍ମଗୋପନ କରନ୍ତୁ ।

ଆଉ ବିଶ୍ରାମ ନେବାର ବା ବେଳ କାହିଁ । ଗୋଟିଏ ଗାମୁଛାରେ କିଛି ଚୂଡ଼ା, ଗୁଡ଼, ଲୁଣ ଆଦି ଖାଦ୍ୟ ପଦାର୍ଥ ବନ୍ଧା ହେଲା । ତାକୁ ଧରି ସେ ଚାଲିଲେ ଜୟନଗର ବାଟ ଦେଇ ରାମଗିରି ଆଡେ । ଏସବୁ ଘଟିଲା ସେହି ରାତିଟି ଭିତରେ । ସକାଳ ପାହିଲା ବେଳକୁ ଲକ୍ଷ୍ମଣ ଜୟପୁରର ବହୁ ଦୂରରେ । ଏଥର ଘରକୁ ଫେରି ଆସିବାରେ ଲକ୍ଷ୍ମଣଙ୍କର କିଛି ଦ୍ୱିଧା ନାହିଁ, କାରଣ ତାଙ୍କର କର୍ତ୍ତବ୍ୟ ହେଉଛି ଆତ୍ମଗୋପନ କରିବା ।

ଲକ୍ଷ୍ମଣ ପୁଣି ଥରେ ଫେରିଗଲେ ତାଙ୍କର ଚିର ପରିଚିତ ରାମଗିରି ଜଙ୍ଗଲ ଓ ତାରା ପର୍ବତକୁ । ଆଠ ଦିନ କାଳ ସେ ବଣ ଭିତରେ ଆତ୍ମଗୋପନ କରି ବୁଲିଲେ । ଆହାର ବଣର ଫଳମୂଳ ଆଉ ଝରଣାର ପାଣି ପାମୀୟ । ଦେହର କ୍ଷତଗୁଡ଼ିକ ଶୁଖି ଆସୁଥାଏ ନିଜର ଚିକିତ୍ସା ଦ୍ୱାରା ।

ସେଇ ବଣ ଭିତରେ ଗାଁ ଗୁଡ଼ିକରେ ସେ ଏକ ବିସ୍ଫୁର୍ତ୍ତିର କଥା ଶୁଣିଲେ । ସେ ଶୁଣିଲେ ଯେ ମାଥିଲି ଆଡ଼ୁରୁ ସରକାରଙ୍କର ପାଇକ ସିପାହୀମାନେ ଗାଁ ଗାଁରେ ଅତ୍ୟାଚାର ଚଳାଇ ଡେନ୍ଗୁଡ଼ିଗୁମ୍ମା ଆଡ଼କୁ ମାଡ଼ି ଆସୁଛନ୍ତି । କଂଗ୍ରେସ କର୍ମୀମାନଙ୍କୁ ଖୋଜିଖୋଜି ମାଡ଼ ଦିଆଯାଉଛି । ଘର ପୋଡ଼ି ଚାଲିଛି । ହାତୀ ସାହାଯ୍ୟରେ କଚା ବାଡ଼ିମାନ ଛିନ୍ ଛତର୍ କରାଯାଉଛି । ଲୋକେ ହାଉଯାଉ । ପ୍ରାଣ ଯାଉଛି କି ଆସୁଛି ।

ଆହୁରି ଆଶ୍ଚର୍ଯ୍ୟର କଥା ହେଉଛି ଲକ୍ଷ୍ମଣଙ୍କୁ ଖୋଜା ଚାଲିଛି ଏକ ନରହତ୍ୟା ଅଭିଯୋଗରେ । ୨୧ ତାରିଖ ଗଣ୍ଡଗୋଳରେ ଯେଉଁ ଫରେଷ୍ଟ ଗାର୍ଡ଼ ରାମାୟା ମଲ୍ଲ ତାର ମୃତ୍ୟୁ କୁଆଡ଼େ ଘଟିଛି ଲକ୍ଷ୍ମଣଙ୍କ ଲାଠି ମାଡ଼ରେ । ଗାଁ ଗାଁ ବୁଲି ସେ ଦିନ ଶୋଭାଯାତ୍ରାରେ ଭାଗ ନେଇଥିବା ଲୋକଙ୍କୁ ଖୋଜା ଚାଲିଛି । ସେମାନଙ୍କ ଉପରେ ଏହି ଅଭିଯୋଗ ଦାୟର କରାଯାଇଛି ଯେ ସେମାନେ ମାଥିଲି ଥାନାକୁ ପୋଡ଼ି ଦେବାପାଇଁ ଯାଇଥିଲେ । ସେଥିରେ ବାଧା ଦେବାରୁ ଲୋକେ ହିଂସା ଆଚରଣ କରିଥିଲେ । କଂଗ୍ରେସ କର୍ମୀ ବୋଲି ଜଣାପଡ଼ିବା ମାତ୍ରେ ତାକୁ ଧରି ମାଥିଲି ଥାନାକୁ ନିଆଯାଉଛି । ଚାରିଆଡ଼େ ଧରପଗଡ଼, ଜୁଲୁମ୍ ଓ ଅତ୍ୟାଚାରର ନାନା ଲୋମହର୍ଷଣକାରୀ ବିବରଣୀ । ମାତା, ପିତା, ସ୍ତ୍ରୀ, ପିଲା କେହି ଅତ୍ୟାଚାରରୁ ମୁକ୍ତ ନୁହନ୍ତି ।

ଲକ୍ଷ୍ମଣ ଆଉ ଧୈର୍ଯ୍ୟ ଧରି ରହିପାରିଲେ ନାହିଁ । ସେ ଆଉ ଆତ୍ମଗୋପନ କରି ରହିପାରିବେ ନାହିଁ । ଲୋକଙ୍କୁ ଏବେ ମାନସିକ ବଳ ଦେବାକୁ ପଡ଼ିବ ।

୧୮ ତାରିଖରେ ଲକ୍ଷ୍ମଣ ଘରକୁ ଫେରିଲେ । ଲକ୍ଷ୍ମଣଙ୍କୁ ଦେଖି ସାରା ଗାଁଟା ଆନନ୍ଦ ଗଦ୍‌ଗଦ୍ । ଗାଁକୁ ଆସି ସେ ଆଉ ଆତ୍ମଗୋପନ କଲେ ନାହିଁ । ବହୁ ଗାଁରୁ ଲୋକେ ଆସି ତାଙ୍କୁ ପୋଲିସ୍‌ର ଅତ୍ୟାଚାର ବିଷୟରେ ଅବଗତ କରାଉଥାନ୍ତି । ସେ ଗାଁ ଗାଁକୁ ଖବର ପଠାଉଥାନ୍ତି କର୍ମୀମାନଙ୍କୁ କିଛି ଦିନ ଆତ୍ମଗୋପନ କରିବାକୁ ।



# ପନ୍ଦର

୧୯୪୨ ମସିହା ସେପ୍‌ଟେମ୍ବର ମାସ ଦୁଇ ତାରିଖ ।

ପାହାନ୍ତିଆରୁ ଲକ୍ଷ୍ମଣ ନାୟକ ପ୍ରାତଃକର୍ମ ସାରିଲେ । ତିରଙ୍ଗା ପତାକା ତଳେ ଧୂପଦେଇ ସ୍ୱାମଧୂନ୍‌ ବୋଲା ହେଲା । ମହାତ୍ମା ଗାନ୍ଧୀଙ୍କ ପ୍ରିୟ ଭଜନ ଜନନେ.......ଗାନ କରାଗଲା । ସକାଳ ଛ'ଟା ବେଳେ ଲକ୍ଷ୍ମଣ ନାୟକ ଘରୁ ଅଗଣାକୁ ବାହାରିଲେ । ଖୋଲା ବେଦୀରେ ପ୍ରାୟ ଦଶ ଜଣ ବସିଛନ୍ତି । ଗୁହାଳରୁ ଗାଈ ଗୋରୁ ଛେଳି ଚରିବାକୁ ବାହାରୁଛନ୍ତି । ଲକ୍ଷ୍ମଣ ନାୟକ ଚରଖା ଚଳାଇବାକୁ ବସିଲେ ।

ଏତେବେଳେ କେହି ଜଣେ ଆସି କହିଲା ଯେ ରାସ୍ତାରୁ ଗାଁ ଗୁଡ଼ିପଟେ ପୋଲିସ୍‌ ଘେରି ରହିଛନ୍ତି । ଆଉ କିଛି ଆଲୋଚନା କରିବାକୁ ବେଳ ନଥିଲା । ପୋଲିସ୍‌ ପହଞ୍ଚିଗଲେ ଲକ୍ଷ୍ମଣ ନାୟକଙ୍କ ଘରେ ।

ଲକ୍ଷ୍ମଣ ନାୟକ କରୁଦ୍‌ବିଗ୍ନ ହୋଇ ବେଦୀରୁ ଉଠି ପଡ଼ିଲେ । ପୋଲିସ୍‌କୁ କହିଲେ, "ମୋତେ ବନ୍ଦୀ କରିପାର, ମୁଁ ପ୍ରସ୍ତୁତ ଅଛି । କିନ୍ତୁ ଏଠି କାହାକୁ ମାରଧର କରନାହିଁ । ପୋଲିସ୍‌ ଲକ୍ଷ୍ମଣ ନାୟକଙ୍କୁ ହାତ କଡି ପକାଇଲେ । ତା ସହିତ ଅନ୍ୟମାନଙ୍କୁ ମଧ୍ୟ । ଏଥିରେ ଲକ୍ଷ୍ମଣ ପ୍ରତିବାଦ କଲେ, ଯେଉଁ-ମାନେ ଆନ୍ଦୋଳନରେ ସମ୍ପୃକ୍ତ ନୁହନ୍ତି ସେମାନଙ୍କୁ ବନ୍ଦୀ କରିବା ଅନ୍ୟାୟ ।" ଲକ୍ଷ୍ମଣ ନାୟକଙ୍କ କଥାକୁ କେହି ଶୁଣିଲେ ନାହିଁ ବରଂ ବଦ୍ରୂପ କରିବାକୁ ଲାଗିଲେ ।

ସେତେବେଳେ ଲକ୍ଷ୍ମଣ ସକାଳ ଜଳଖିଆ ଗେଞ୍ଜି ମଧ୍ୟ ଖାଇ ନଥିଲେ । ତାଙ୍କ ସ୍ତ୍ରୀ ମଙ୍ଗୁଳି ହାତରେ ଗେଞ୍ଜି ଧରି ପହଞ୍ଚିଲେ । ଲକ୍ଷ୍ମଣଙ୍କୁ ସେତିକି

ଖାଇବାକୁ ବି ଦିଆଗଲା ନାହିଁ । ଏ ସମୟରେ ଲକ୍ଷ୍ମଣଙ୍କ ପୁଅ ରଘୁନାଥ କୋଳାହଳ ଶୁଣି ଘରୁ ବାହାରକୁ ଆସିଲେ । ତାଙ୍କୁ ମଧ୍ୟ ବନ୍ଦୀ କରାଗଲା ।

ଗାଁ ଭିତରେ ହାତକଡି ଦେଇ ଚଲାଇ ନେଲାବେଳେ ଘରୁ ଘରୁ କ୍ରନ୍ଦନ ଧ୍ୱନିରେ ଗାଁଟା ଉଚ୍ଛୁଳି ଉଠିଲା । କିନ୍ତୁ ଏତେ ଦୁର୍ଦ୍ଦଶା ସତ୍ତ୍ୱେ ମଙ୍ଗୁଳିଙ୍କ ଆଖିରୁ ଟୋପାଏ ଲୁହ ବି ଝରି ପଡିନଥିଲା । ସେ କାବା କାଠ ହୋଇ ଯାଇଥିଲେ । ତାଙ୍କର ପାଣି ଆଖି ଭିତରେ କେଉଁକାଳୁ ମରିଯାଇଥିଲା ବୋଧହୁଏ ।

କିନ୍ତୁ କ'ଣ କରିଥିଲା ତାଙ୍କ ପୁଅ ରଘୁନାଥ । ସେଇ ନିରପରାଧ ବାଳକକୁ କାହିଁକି ଦଉଡି ବାନ୍ଧି ପିଶାଚମାନେ ନେଇଗଲେ ?

ମଙ୍ଗୁଳିଙ୍କ ହାତରୁ ଗେଞ୍ଜି ଗିନାଟି କେତେବେଳୁ ତଳେ ପଡ଼ି ଗେଞ୍ଜିତକ ଛିଡ଼ି ହୋଇ ସାରିଥିଲା ।

ଲକ୍ଷ୍ମଣ ଗାଁ ଗାଁ ଦେଇ ମାଟିଲକୁ ଗଲାବେଳେ ଦେଖିଲେ ପ୍ରତି ଗାଁରୁ କିଛି କିଛି କର୍ମୀ ବାନ୍ଧି ସାଙ୍ଗରେ ମିଶାଯାଉଛି । ସାନଗୁମ୍ମାରୁ ଯୋଗ ଦେଲେ ତାଙ୍କ ଶଳା ବଳସିଂ ପୂଜାରୀ । ତାଙ୍କର ଗୋଟିଏ ହାତର ହାଡ଼ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଥିଲେ ସୁଦ୍ଧା ତାଙ୍କୁ ନଡ଼ିଆ ଦଉଡ଼ିରେ ବାନ୍ଧି ନିଆଗଲା ।

ମାଟିଲି ଆନାର ପ୍ରାୟ ଶହେ ଜଣେ ଲୋକଙ୍କୁ ଗୋରୁଗାଡ଼ି ଭଳି ରଖାଗଲା । ସେଥିରୁ ଅନେକେ ସେ ଦିନ ଶୋଭାଯାତ୍ରାରେ ଯୋଗ ଦେଇ ନଥିଲେ । ତିହ୍ନାଟ ମୁହଁରୁ କେତେ ଜଣ ପୋଲିସଙ୍କୁ କିଛି ହାତ ଗୁଞ୍ଜା ଦେଇ ଛାଡ଼ ପାଇଥିଲେ । ରଘୁନାଥଙ୍କୁ ଛାଡ଼ି ଦେବା ପାଇଁ ଲକ୍ଷ୍ମଣ ଅନେକ ଅନୁରୋଧ କଲେ ମଧ୍ୟ କିଛି ଫଳ ହୋଇନଥିଲା । ଗାଁର କେତେଜଣ ପୋଲିସକୁ ଯାଇ ଖୋସାମତ କରିବାରୁ ପୋଲିସ ବାବୁ ୩୦ ଟଙ୍କା ଲାଞ୍ଚ ଦେଲେ ଛାଡ଼ିଦେବାକୁ ରାଜି ହେଲେ । ମଙ୍ଗୁଳିଙ୍କ ପାଖକୁ ଖବର ଗଲା । ସେ ଦୁଇଟି ବଡ଼ ବଡ଼ ଛେଳି ବିକି କରି ତିରିଶ ଟଙ୍କା ପଠାଇଲେ । ଏଥିରେ ରଘୁନାଥ ଛାଡ଼ ପାଇଲେ । ଏହି ବିବରଣୀ ଶ୍ରୀ ରଘୁନାଥ ନାୟକ ନିଜେ କହିଛନ୍ତି ।

ସେପ୍‌ଟେମ୍ବର ଆଠ ତାରିଖରେ ଚାର୍ଜସିଟ ଫାଇଲ ହେଲା । ଚାର୍ଜସିଟ କଲେ ପୋଲିସ୍, ମଦ ଦୋକାନୀ ଏବଂ ଠିକାଦାର ଓ ହୋଟେଲ ମାଲିକ ପଦ୍ମନାଭ ପାଣିଗ୍ରାହୀ । ୫୪ ଜଣଙ୍କ ବିରୁଦ୍ଧରେ କେସ୍ ଦାୟର ହେଲା । ଏ ସମସ୍ତଙ୍କୁ କୋରାପୁଟ ଜେଲ୍‌କୁ ପଠାଗଲା । ଜିଲ୍ଲାର ଅନ୍ୟ ସ୍ଥାନମାନଙ୍କରୁ ମଧ୍ୟ ଶହ ଶହ କର୍ମୀଙ୍କୁ ଜେଲ୍ ହାଜତରେ ରଖାଯାଇଥାଏ । ଏମାନଙ୍କ ଦୁର୍ଦ୍ଦଶା ଅବର୍ଣ୍ଣନୀୟ । ମୁଦ୍‌ଗର ଲଠି ପ୍ରହାର ଓ ବନ୍ଧୁକ ଦ୍ୱାରା କ୍ଷତବିକ୍ଷତ ସ୍ଥାନମାନ ଘା ଘଉଡ଼ରେ ଭରପୂର । କାହାକୁ ଜ୍ୱର ତ କାହାକୁ ଝାଡ଼ା । ଜେଲ୍‌ରେ ସ୍ଥାନାଭାବ । ଜଣେ ରହିବା ବଖରାରେ ୮/୧୦ ଜଣ ଖୁନ୍ଦି ହେଲେ । ନାନା-ପ୍ରକାର ରୋଗ ମାଡିଲା । ଏପରି ନର୍କକୁଣ୍ଡରେ କେବେ ବଞ୍ଚିବେ ବା କେତେ କାଳ ? ପୋକ ମାଛି ଭଳି ଅନେକ ଲୋକ ମଲେ ତା' ଭିତରେ ।

ଅଳ୍ପ କିଛି ଦିନ ପରେ ଲକ୍ଷ୍ମଣ ନାୟକ ଓ ତାଙ୍କର ୫୩ ଜଣ ସହକର୍ମୀଙ୍କ ବିରୁଦ୍ଧରେ ରାଜଦ୍ରୋହ ଓ ନରହତ୍ୟା ମକଦ୍ଦମା କୋରାପୁଟର ତତ୍‌କାଳୀନ ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ ଓ ଡେପୁଟି କଲେକ୍ଟର ଶ୍ରୀ ସୋମନାଥ ମିଶ୍ରଙ୍କ କୋର୍ଟରେ ଆଗତ କରାଗଲା । ସାକ୍ଷୀ ଇଜାହା ନେଇ ଏହି କେଶରେ ଆପାତ ବିଶ୍ୱାସଯୋଗ୍ୟ ସାକ୍ଷ୍ୟ ପ୍ରମାଣ ଅଛି ବୋଲି ହୃଦୟଙ୍ଗମ କରି ସେ କେସ୍‌ଟିକୁ ଉପର କୋର୍ଟକୁ 'କମିଟ୍' କଲେ ।

ମୂଳରୁ ଲକ୍ଷ୍ମଣ ନାୟକ କହୁଥିଲେ ଯେ ଏ ଏକ ମିଥ୍ୟା କେସ୍ । ସ୍ୱାଧୀନତା ପାଇଁ ଆନ୍ଦୋଳନ କରି ଅନେକ ଲୋକ ପୋଲିସ୍‌ର ଏପରି ମିଥ୍ୟା କେସ୍‌ର ଶରବ୍ୟ ହୋଇଛନ୍ତି । ଅନେକ ଭାରତୀୟ ମଧ୍ୟ ପରାଧୀନତାରୁ ଯଥେଷ୍ଟ ଲାଭ ଉଠାଉଛନ୍ତି । ସେମାନେ ଲୋକଙ୍କୁ ଡରାଇ ପାରୁଛନ୍ତି, ଆଧିପତ୍ୟ ବିସ୍ତାର କରିପାରୁଛନ୍ତି ଏବଂ କ୍ଷମତା ଦେଖାଇ ପାରୁଛନ୍ତି, ତା ଉପରେ ଯଦି ସ୍ୱାଧୀନତା ଆନ୍ଦୋଳନକୁ ଦବାଇ ଦିଆଯାଇପାରେ ଏବଂ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଯଦି ଦଣ୍ଡିତ କରାଯାଏ ତେବେ ସେମାନେ ଇଂରେଜ ସରକାରଙ୍କ ସୁନା ପୁଅ ହୋଇପାରିବେ । ତେଣୁ ଲକ୍ଷ୍ମଣ ନାୟକ ଆପଣାର ପାଇଁ ଯୁକ୍ତି କରିବାକୁ କୌଣସି ଓକିଲ ମଧ୍ୟ ନିଯୁକ୍ତ କରି ନଥିଲେ ।



# ଷୋହଳ

୧୯୪୧ ମସିହା ଅକ୍ଟୋବର ମାସରେ କୋରାପୁଟର ଅତିରିକ୍ତ ସେସନ୍ସ ଜଜ୍ ଶ୍ରୀ ଭି. ରାମନାଥନ୍ (ଆଇ. ସି. ଏସ୍.) ଙ୍କ କୋର୍ଟରେ ବିଖ୍ୟାତ ଲକ୍ଷ୍ମଣ ନାୟକ କେଶ୍‌ର ବିଚାର ଚାଲିଲା । ଶ୍ରୀ ରାମନାଥନ୍ ପରେ ଓଡ଼ିଶାର ରେଭେନ୍ୟୁ ବୋର୍ଡ ସଭ୍ୟ ହୋଇଥିଲେ । ୧୯୪୧ର କେଶ୍ ନମ୍ବର ୧୮ରେ ଉକ୍ତ ବିବରଣୀ ବର୍ଣ୍ଣିତ ହୋଇଛି । ଏଥିରେ ଶ୍ରୀ ଲକ୍ଷ୍ମଣ ନାୟକ ଓ ଶ୍ରୀ ବଲରାମ ପୂଜାରୀଙ୍କ ବିରୁଦ୍ଧରେ ନରହତ୍ୟା ଏବଂ ସମସ୍ତଙ୍କ ବିରୁଦ୍ଧରେ ଭାରତ ରକ୍ଷା ଆଇନର ଖିଲାପ ଅଭିଯୋଗ କରାଯାଇଛି । ଯେଉଁ ୫୪ ଜଣଙ୍କୁ ଏଥିରେ ଅଭିଯୁକ୍ତ କରାଯାଇଥିଲା ସେମାନଙ୍କ ନାମ ପରିଶିଷ୍ଟରେ ଦିଆଯାଇଛି ।

ଏହି ବିଚାରଣାରେ ସରକାରଙ୍କ ପକ୍ଷରୁ ସାକ୍ଷ୍ୟ ଦେଇଥିଲେ ୩୩ ଜଣ । ଏମାନଙ୍କ ଭିତରେ ସେ ଦିନ ଥାନାରେ ଥିବା ସମସ୍ତ ପୋଲିସ୍ ଓ ଅନ୍ୟାନ୍ୟ ଅଫିସର୍, ଡାକ୍ତର, ତାଲୁକା ମାଜିଷ୍ଟ୍ରେଟ ଓ ବାହାରୁ ମଦ ଦୋକାନୀ ଏନ୍. ଶଙ୍କରାପ୍ପା, ହାଟ କଣ୍ଟ୍ରାକ୍ଟର ନରସିଙ୍ଗ ପୂଜାରୀ, ଠିକାଦାର୍ ହାଇଦର ବେଗ୍ ଏବଂ ଦୁଇଜଣ ସାହୁକାର ଅବ୍‌ଦୁଲ୍ ପୀର ଖାଁ ଓ ମାଧବ ବଲରାମ ଅନ୍ତର୍ଭୁକ୍ତ । ସମ୍ରାଟଙ୍କ ତରଫରୁ ଆସାମୀମାନଙ୍କ ପାଇଁ ଲଢିବାକୁ ତତ୍କାଳୀନ ଜୟପୁର ରାଜାଙ୍କ ଦରବାର ଓକିଲ ଶ୍ରୀ ଆର୍. ଜଗନ୍ନାଥ ରାଓଙ୍କୁ ନିଯୁକ୍ତ କରିଥିଲେ । ଲକ୍ଷ୍ମଣ ନାୟକଙ୍କ ତରଫରୁ କେହି ସାକ୍ଷୀ ନଥିଲେ କି କୋର୍ଟରେ ତାଙ୍କ

ପକ୍ଷଭୁକ୍ତ ହୋଇ ଲଢ଼ିବାକୁ ସେ କୌଣସି ଓକିଲ ନିଯୁକ୍ତ କରି ନଥିଲେ ।

ବିଚାରଣା ଶେଷ ହେବା ପରେ ୧୯୪୨ ନଭେମ୍ବର ୧୩ ତାରିଖରେ ବିଚାରପତି ରାୟ ଶୁଣାଇଲେ । ଉକ୍ତ ରାୟର ସାରମର୍ମ ତଳେ ଦିଆଗଲା ।

ଅଗଷ୍ଟ ମାସରେ ଭାରତୀୟ କଂଗ୍ରେସ ପାର୍ଟିରେ ସରକାରକୁ ହଇରାଣ ହରକତରେ ପକାଇବା ଭଳି କେତେକ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ତେଣୁ କଂଗ୍ରେସ ଅନୁଷ୍ଠାନକୁ ବେଆଇନ ଘୋଷଣା କରାଯାଇଥିଲା । ତଥାପି ଉକ୍ତ ପ୍ରସ୍ତାବମାନ ଗୁପ୍ତ କର୍ମୀମାନେ ଗାଁ ଗାଁରେ ବାଣ୍ଟୁଥିଲେ । ଲକ୍ଷ୍ମଣ ନାୟକ ଓ ବଳରାମ ପୂଜାରୀ ଏଥିର ମୁଖ୍ୟ ଥିଲେ । ମଦ ଦୋକାନମାନ ଏମାନଙ୍କ ଉପରେ ବନ୍ଦ ହୋଇଯାଇଥିଲା । ପ୍ରକାଶିତ କାଗଜ ଓ ସେମାନଙ୍କ ଭାଷଣରୁ ୨୧ ତାରିଖରେ ଗଣ୍ଡଗୋଳର ସୂଚନା ମିଳୁଥିଲା । ତେଣୁ ମାଥିଲି ଥାନାରେ ମାଲକାନଗିରି, ଭେଙ୍କଟ-ପଲମ ଓ ମାଥିଲିର ସବ୍-ଇନ୍‌ସପେକ୍ଟର ଛଡ଼ା ଅନ୍ୟାନ୍ୟ ବିଭାଗରୁ ମଧ୍ୟ କର୍ମଚାରୀମାନେ ଜାଗତିଆର ହୋଇ ରହିଥିଲେ ।

ଅଗଷ୍ଟ ୨୧ ତାରିଖ ସକାଳେ ଲକ୍ଷ୍ମଣ ନାୟକ ଏକ ହଜାର ଲୋକଙ୍କର ନେତୃତ୍ୱ ନେଇ ଥାନା ଆଡ଼କୁ ଆସିଲେ । ସେମାନେ ସ୍ଲୋଗାନ ଦେଉଥିଲେ, "ବ୍ରିଟିଶ୍ ସରକାର ଚାଲିଗଲେଣି । ସ୍ୱରାଜ ଆସିଗଲା । ଜୟପୁରର ବୁଢ଼ା ରାଜା ମୃତ । ଆମ୍ଭେମାନେ ପୋଲିସ୍ ଥାନା ପୋଡ଼ିଦେବୁ ଏବଂ ସରକାରୀ କର୍ମଚାରୀଙ୍କୁ ହତ୍ୟା କରିବୁ । ଆମେ ମାଲକାନଗିରି ଟ୍ରେଜେରୀ ଲୁଟି ନେବୁ ।"

ପୋଲିସ୍ ବୁଝାମଣା କରିବା ପରେ ସେମାନେ ହାଟକୁ ଲେଉଟି ଗଲେ । ସେଠି ମଧ୍ୟ ଲକ୍ଷ୍ମଣ ସରକାର ବିରୋଧୀ ଭାଷଣ ଦେବାରେ ଲାଗିଲେ । "ଗାନ୍ଧୀରାଜ ଆସିଗଲା । କର ବା ଦାନ୍ ଦେବା ବନ୍ଦ କର । ଆମକୁ ବନ୍ଦୀ ନକଲେ ଆମେ ଥାନାକୁ ପୋଡ଼ି ଦେବୁ ।" ମଧ୍ୟାହ୍ନ

ଵେଲକୁ ଆହୁରି ବେଶି ଲୋକଙ୍କୁ ନେଇ ଲକ୍ଷ୍ମଣ ଥାନା ଆଡ଼େ ଅଗ୍ରସର ହେଲେ । ଏଥର ଥାନାରେ ବନ୍ଧୁକଧାରୀ ପୋଲିସ୍ ମୁତୟନ ହୋଇ ସାରିଥିଲେ ।

ମାଜିଷ୍ଟ୍ରେଟ୍ ଉକ୍ତ ସମାବେଶକୁ ବେଆଇନ ଘୋଷଣା କଲେ । କିନ୍ତୁ ତାଙ୍କ କଥା ନ ଶୁଣି ଲୋକେ ମାରଧର ଆରମ୍ଭ କରିଦେଲେ । ଏଥିରେ ଜଣେ ଇନସ୍‌ପେକ୍‌ଟର ଓ ଜଣେ କନଷ୍ଟେବଲ୍ ଆହତ ହେଲେ । ମାଜିଷ୍ଟ୍ରେଟ୍ ଲାଠି ଚାର୍ଜ ଆଦେଶ ଦେଲେ । ଏହା ଦ୍ୱାରା ଉତ୍ତେଜିତ ଜନତାର ଆକ୍ରମଣ ଆହୁରି ବଢ଼ିଗଲା । ଏହି ସମୟରେ ଜି. ରାମାୟା ନାମକ ଫରେଷ୍ଟ ଗାର୍ଡ଼ଙ୍କ ମୁଣ୍ଡରେ ଗୋଟିଏ ଜୋର୍‌ଦାର ଲାଠି ମାଡ଼ ହେଲା ଏବଂ ସେ ତତ୍‌କ୍ଷଣାତ୍ ତଳେ ପଡ଼ି ମରିଗଲେ । ତତ୍‌ପରେ ଉତ୍ତେଜିତ ଲୋକଙ୍କୁ ଘଉଡ଼େଇବା ପାଇଁ ବନ୍ଧୁକ ଚାଳନାର ଆଦେଶ ଦିଆଗଲା । ରାଜସାକ୍ଷୀଙ୍କ ଭିତରୁ ଅଧିକାଂଶ କହିଛନ୍ତି ଯେ ଲକ୍ଷ୍ମଣ ନାୟକ ରାମାୟାର ମୁଣ୍ଡରେ ପ୍ରହାର କରିଥିଲେ ଏବଂ ବଳରାମ ତାଙ୍କୁ ବେକରେ ଲାଠି ମାଡ଼ ଦେଇଥିଲେ । ଡାକ୍ତରଙ୍କ ମତ ହେଲା ମୁଣ୍ଡରେ ହୋଇଥିବା କ୍ଷତ ଯୋଗୁଁ ରାମାୟାର ମୃତ୍ୟୁ ହୋଇଛି ।

ଜନତା ଭିତରୁ ଯେଉଁ ଦୁଇ ଜଣଙ୍କର ଅବସ୍ଥା ଗୁରୁତର ଥିଲା ସେମାନେ ମୃତ୍ୟୁକାଳୀନ ଜମାନବନ୍ଦୀରେ କହିଛନ୍ତି, "ଶୁକ୍ରବାର ଦିନ ଆମେ ମାଥିଲି ହାଟରେ ଗୋଟିଏ ସଭା କଲୁ । ତା ପରେ ଆମେ ପୋଲିସ୍ ଥାନାକୁ ପୋଡ଼ି ଦେବାପାଇଁ ଚାଲିଲୁ । ମୁଁ ସରକାରୀ କର୍ମଚାରୀଙ୍କୁ ବାଡ଼େଇଲି । ମୁଁ ମୋ ତଳପେଟରେ ବନ୍ଧୁକ ଗୁଳିଦ୍ୱାରା ବିଦ୍ଧ ହୋଇଛି ।"

ଲକ୍ଷ୍ମଣ ନାୟକ ଓ ଅନ୍ୟାନ୍ୟ ବନ୍ଦୀମାନେ କହିଛନ୍ତି ଯେ ସେମାନେ କେବଳ ସତ୍ୟାଗ୍ରହ କରିବାକୁ ଥାନାକୁ ଯାଇଥିଲେ । ରାମାୟାର ମୃତ୍ୟୁ ପାଇଁ ସେମାନେ ଦାୟୀ ନୁହନ୍ତି । ପୋଲିସ୍‌ର ଗୁଳି ଚାଳନାରେ ତାର ମୃତ୍ୟୁ ହୋଇ-ଥାଇପାରେ ।

ବିଚାରପତି ସମସ୍ତଙ୍କର ଜମାନବନ୍ଦୀ ଶୁଣି ସାରିବା ପରେ ଉଲ୍ଲେଖ କରିଛନ୍ତି ଯେ ଲକ୍ଷ୍ମଣ ନାୟକ ଓ ଅନ୍ୟମାନେ ଦୋଷୀ, ରାମାୟାର ମୃତ୍ୟୁ ପାଇଁ ଦାୟୀ । ଲକ୍ଷ୍ମଣଙ୍କ ଭାଷଣ, ଯଥା—ବ୍ରିଟିଶ୍ ଚାଲିଗଲେଣି ।

ଏ ଦେଶ ଆମର । ଭାଇମାନେ ଜାଗିଉଠ ସ୍ୱାଧୀନତା ସମରରେ ଡ଼େଇଁପଡ଼ ।" ପୁରାପୁରି ଦେଶର ପ୍ରତିରକ୍ଷାକୁ କ୍ଷୁଣ୍ଣ କରୁଛି ଏବଂ ପ୍ରତିରକ୍ଷା ଆଇନର ବିରୁଦ୍ଧାଚରଣ କରୁଛି ।

ଶେଷରେ ବିଚାରପତି ମାନ୍ୟବର ରାମନାଥନ୍ ନିଜର ରାୟ ଶୁଣାଇ କହିଥିଲେ କି କଂ. ରାମାୟାର ମୃତ୍ୟୁ ପାଇଁ ଭାରତୀୟ ଦଣ୍ଡବିଧି ଆଇନର ୩୦୨ ଧାରା ଅନୁଯାୟୀ ମୁଁ ଲକ୍ଷ୍ମଣ ନାୟକଙ୍କୁ ଦୋଷୀ ସାବ୍ୟସ୍ତ କରି ତାଙ୍କୁ ଚରମ ଦଣ୍ଡ ପ୍ରଦାନ କରୁଛି । ତାଙ୍କୁ ଫାଶୀ ଖୁଣ୍ଟରେ ମୃତ୍ୟୁ ପର୍ଯ୍ୟନ୍ତ ଝୁଲାଇବା ପାଇଁ ନିର୍ଦ୍ଦେଶ ଦେଉଛି । ଭାରତୀୟ ପ୍ରତିରକ୍ଷା ଆଇନ ଅନୁଯାୟୀ ସେ ଦୋଷୀ ସାବ୍ୟସ୍ତ ହେଲେ ମଧ୍ୟ ତା' ପାଇଁ ଅନ୍ୟ କିଛି ଦଣ୍ଡ ଦିଆଯାଉ ନାହିଁ ।

ଲଚ୍ଛମନ୍ ଭୁମିଆ, ଅର୍ଜ୍ଜୁନ ଭୁମିଆ, ସମ୍ବାରୁ ଭୁମିଆ ଓ ସନିଆ ଭୁମିଆଙ୍କ ବିରୁଦ୍ଧରେ ଅଭିଯୋଗ ପ୍ରମାଣିତ ନ ହେବାରୁ ସେମାନଙ୍କୁ ମୁକ୍ତି ଦିଆଯାଇଛି । ଅନ୍ୟ ୪୯ ଜଣଙ୍କୁ ଥାନା ଉପଦ୍ରବ ହିଂସାତ୍ମକ ଆକ୍ରମଣ ପାଇଁ ଭାରତୀୟ ପ୍ରତିରକ୍ଷା ନିୟମର ଖିଲାପ ଲାଗି ଦୋଷୀ ସାବ୍ୟସ୍ତ କରି ସମସ୍ତଙ୍କୁ ଯାବଜ୍ଜୀବନ କାରାଦଣ୍ଡ ଦିଆଯାଇଛି । ସେଥିରୁ ପ୍ରଥମ ୯ ବର୍ଷ ସେମାନେ ସଶ୍ରମ କାରାଦଣ୍ଡ ଭୋଗିବେ ।

ଏହି ରାୟ ଶୁଣାଇ ଦିଆଗଲା ପରେ ଲକ୍ଷ୍ମଣ ନାୟକଙ୍କୁ ବ୍ରହ୍ମପୁର ଜେଲ୍‌କୁ ସ୍ଥାନାନ୍ତରିତ କରାଗଲା । ଅନ୍ୟମାନେ ସଶ୍ରମ କାରାଦଣ୍ଡ ଭୋଗିବା ପାଇଁ କୋରାପୁଟ ଜେଲ୍‌ରେ ରହିଲେ । ଜେଲ୍ ଅବସ୍ଥା ତ ଆଗରୁ କୁହାଯାଇଛି । ସେଇ ନର୍କକୁଣ୍ଡରେ ଘାଣ୍ଟି ହୋଇ ଆହୁରି କେତେଜଣ ମୃତ୍ୟୁବରଣ କରିଥିଲେ ।

X X X

ଲକ୍ଷ୍ମଣ ନାୟକ ବ୍ରହ୍ମପୁର ଜେଲରେ ଥିଲାବେଳେ ସେଠି ଓଡ଼ିଶାର ଅନେକ ବରେଣ୍ୟ ନେତା, ରାଜନୈତିକ କର୍ମୀ ବନ୍ଦୀଭାବେ ଥା'ନ୍ତି । କୋରାପୁଟର ରାଧାମୋହନ ସାହୁ, ରାଧାକୃଷ୍ଣ ବିଶ୍ୱାସରାୟ ଓ ସଦାଶିବ ତ୍ରିପାଠୀ ଏବଂ ଅନ୍ୟାନ୍ୟ ଜିଲ୍ଲାର ବିପ୍ଳବୀ କବି ଗୋଦାବରୀଶ ଦାସ,

ଲୋକନାଥ ମିଶ୍ର, ଉମାଚରଣ ପଟ୍ଟନାୟକ ସେଇଠାରେ ଥା'ନ୍ତି । ଏମାନେ ସମସ୍ତେ ଲକ୍ଷ୍ମଣ ନାୟକଙ୍କର ଫାଶୀ ଦଣ୍ଡାଦେଶରେ ଉଦ୍‌ବେଗ ପ୍ରକାଶ କଲେ ।

ଉପର କୋର୍ଟ (ପାଟଣା ହାଇକୋର୍ଟ) କୁ ଅପିଲ କରିବା ପାଇଁ ସେମାନେ ଯତ୍ନ କଲେ । ସେତେବେଳେ ବ୍ରହ୍ମପୁରର ଓକିଲ ଶ୍ରୀ ରାଧାଚରଣ ଦାସଙ୍କ ପାଖକୁ ଲକ୍ଷ୍ମଣଙ୍କ ଦସ୍ତଖତ ସହ ଗୋଟିଏ ଅନୁରୋଧ ଚିଠି ପଠାଗଲା ।

ସେଥିରେ ଲେଖାଥିଲା—

ପ୍ରିୟ ମହାଶୟ,

ଜୟପୁର ଇଷ୍ଟେଟ୍‌ର ଜଣେ ଫରେଷ୍ଟ ଗାର୍ଡ ଜି. ରାମାୟାର ହତ୍ୟା ଅପରାଧରେ ଦୋଷୀ ସାବ୍ୟସ୍ତ କରି ମୋତେ ମୃତ୍ୟୁଦଣ୍ଡ ଦେବାପାଇଁ ରାୟ ଦିଆଯାଇଛି ।

ମୋର କୌଣସି ଦୋଷ ନଥିଲେ ସୁଦ୍ଧା ପୋଲିସ୍‌ର ଖରାପ ଅଭିସନ୍ଧି ଯୋଗୁଁ ମୋତେ ମୃତ୍ୟୁଦଣ୍ଡ ଭୋଗ କରିବାକୁ ପଡ଼ୁଛି ।

ମୁଁ ଗତ କେତେ ବର୍ଷ ଧରି କୋରାପୁଟ ଜିଲ୍ଲାର ନୱାପଡ଼ାର କଂଗ୍ରେସ କର୍ମୀଭାବେ କାର୍ଯ୍ୟ କରୁଥିଲି । ମହାତ୍ମା ଗାନ୍ଧୀଙ୍କୁ ଆଦର୍ଶ ରୂପେ ଗ୍ରହଣ କରି ଅହିଂସାକୁ ହିଁ ନିଜର ଚରମ ବ୍ରତ କରିଥିଲି । କୌଣସି ଅବସ୍ଥାରେ ସୁଦ୍ଧା ମୁଁ ସେଥିରୁ ବିଚ୍ୟୁତ ନ ହୁଏ, ସେଥିପାଇଁ ସତତ ଚେଷ୍ଟିତ ଅଛି । ସେ ଦିନ ମୁଁ ଶାନ୍ତିପୂର୍ଣ୍ଣ ଭାବେ ଭାରତର ସ୍ୱାଧୀନତା ବିଷୟରେ କହିବା ପରେ ଲୋକମାନେ ପୋଲିସ୍‌ର ନିର୍ଦ୍ଦେଶ ନ ମାନି ବନ୍ଧୁଗାଁ ଥାନାରେ ଯାଇ ଥାନା ଆଗରେ ଗିରଫ ହେବା ପାଇଁ ଅପେକ୍ଷା କରି ରହିଥିଲେ । ସେତିକିବେଳେ ଜନତା ଉପରେ ପୋଲିସ୍ ବିଚାରଶୂନ୍ୟ ଭାବରେ ଯେଉଁ ଅମାନୁଷିକ ଗୁଳିଚାଳନା କଲା ସେଥିରେ ହିଁ ପ୍ରକୃତରେ ରାମାୟାର ମୃତ୍ୟୁ ଘଟିଛି । ଗୁଳିଚାଳନା ପୂର୍ବରୁ ମୋ ଉପରେ ଲାଠି ପ୍ରୟୋଗ ଅତ୍ୟାଚାର କରାଯାଇଥିଲା ଏବଂ ମୋ ମୁହଁରେ ବନ୍ଧୁକର କୁନ୍ଦା ମାଡ଼ ବସିଥିଲା । ମୁଁ ନିସ୍ତେଜ ହୋଇ ତଳେ ପଡ଼ିଥିଲି ।

ଏଭଳି ଅବସ୍ଥାରେ ମୁଁ ସମାପ୍ତା ଉପରେ ଆକ୍ରମଣ କରି ତାଙ୍କୁ ଯେ ହତ୍ୟା କରିବି ଏହା ସମ୍ପୂର୍ଣ୍ଣ ଅସମ୍ଭବ । ଭଗବାନଙ୍କ ଦୃଷ୍ଟିରେ ଏବଂ ମୋ ନିଜ ବିବେକ ଦୃଷ୍ଟିରେ ମୁଁ ନିର୍ଦ୍ଦୋଷ ।

ତେଣୁ ମୁଁ ଆପଣଙ୍କୁ ହିଁ ବର୍ତ୍ତମାନ ମୋର ଏକ ମାତ୍ର ସାହାଯ୍ୟକର୍ତ୍ତା ଭାବେ ଗ୍ରହଣ କରୁଛି । ମାନ୍ୟବର ହାଇକୋର୍ଟକୁ ଆବେଦନ ପତ୍ର ପଠାଯାଇଛି । ମୋର ଅନୁରୋଧ ଆପଣ ମୋ ସହିତ କଥାବାର୍ତ୍ତା କରି ଏବଂ ସମସ୍ତ ନଥିପତ୍ର ଅନୁଧ୍ୟାନ କରି ହାଇକୋର୍ଟ ଓକିଲଙ୍କୁ ଆବଶ୍ୟକୀୟ ତଥ୍ୟ ଯୋଗାଇବେ ।

ଇତି
ଲକ୍ଷ୍ମଣ ନାୟକ
(ଆସାମୀ ନଂ ୭୭୧)

ଓକିଲ ଶ୍ରୀ ରାଧାଚରଣ ଦାସ ଏକ୍ସ ରଠି ପାଇ ଜେଲରେ ଥିବା ଶ୍ରୀ ଉମାଚରଣ ପଟ୍ଟନାୟକ ସହିତ ଆଲୋଚନା କରିଥିଲେ ଏବଂ ପାଟଣା ହାଇକୋର୍ଟରେ ଅପିଲ କରାଯାଇଥିଲା । କିନ୍ତୁ ଅପିଲ ଖାରଜ ହୋଇଗଲା ।

ବ୍ରହ୍ମପୁର ଜେଲରେ ଥିବା ଶ୍ରୀ ବିଶ୍ବାସରାୟ ସମେତ ଓଡ଼ିଶାର ମୁଖିଆ କଂଗ୍ରେସ କର୍ମୀମାନେ ଦୁଃଖରେ ଭାଙ୍ଗି ପଡ଼ିଲେ । ସେମାନଙ୍କ ଭିତରେ ରହି ଜଣେ ଯେ ଫାଶୀ ପାଇବ ଏହା କମ୍ ବେଦନାଦାୟକ ନୁହେଁ ।



# ସତର

ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦେବା ପାଇଁ ୧୯୪୨ ନଭେମ୍ବର ୧୬ ତାରିଖରେ ବ୍ରହ୍ମପୁର ଜେଲ୍‌କୁ ସ୍ଥାନାନ୍ତରିତ କରାଯାଇଥିଲା । ଜେଲ୍‌ରେ ପ୍ରଥମ କେତୋଟି ଦିନ ସେ ବିଚଳିତ ଜଣାପଡ଼ୁଥିଲେ । ବିଶେଷକରି ଜେଲ୍‌ରେ ଥିବା ଓଡ଼ିଶାର ବିଶିଷ୍ଟ ନେତାମାନେ ତାଙ୍କ ଜୀବନ ରକ୍ଷା ପାଇଁ ଉପର ସ୍ତରକୁ ଅପିଲ କରିବା ସକାଶେ ଯେଉଁ ତତ୍ପରତା ପ୍ରକାଶ କଲେ ସେଥିରେ ଲକ୍ଷ୍ମଣ ନାୟକ ଅନିଚ୍ଛା ସତ୍ତ୍ୱେ ଜଡିତ ହୋଇ ପଡ଼ିଲେ । ସେ ତ ଇଂରେଜୀ ଜାଣନ୍ତି ନାହିଁ । ଅନ୍ୟମାନେ କଷ୍ଟି ଲେଖିବା ପୂର୍ବରୁ ଲକ୍ଷ୍ମଣଙ୍କ ସହିତ ଆଲୋଚନା ହୁଏ ଏବଂ ଇଂରେଜୀ ଭାଷାରେ ଲିଖିତ ଚିଠି ପତ୍ରରେ ସେ ଦସ୍ତଖତ କରନ୍ତି ।

ଅଳ୍ପ କେତୋଟି ମାସ ମଧ୍ୟରେ ସବୁ କଥା ସ୍ପଷ୍ଟ ହୋଇଗଲା । ସେ ଯେ ଫାଶୀ କାଠରେ ଝୁଲିବେ ଏହା ନିଶ୍ଚିତ ।

ତା ପରେ ଲକ୍ଷ୍ମଣ ନାୟକ ନୀରବରେ ଏକୁଟିଆ ହିଁ ରହିବାକୁ ଲାଗିଲେ । ଅନ୍ୟ ନେତାମାନେ ହତାଶ । ସାରା ଜେଲ୍‌ରେ ଅସହାୟର ବାତାବରଣ ଖେଳିଗଲା ।

ଲକ୍ଷ୍ମଣ ସକାଳୁ ପ୍ରାତଃକର୍ମ ସାରି ପୂର୍ବପରି ରାମଧୂନ୍ ବୋଲନ୍ତି । ଗୁଣୁ ଗୁଣୁ ହୋଇ ଗାନ୍ଧିଜୀଙ୍କ ପ୍ରିୟ ଭଜନ 'ବୈଷ୍ଣବ ଜନତୋ..............'' ଗାନ କରନ୍ତି । ଏମିତି କେତେବେଳ କଟିଯାଏ । କିନ୍ତୁ ତା ପରେ...

ପଡ଼ିରହିଛନ୍ତି ଏକ ଦୀର୍ଘଦିନ । ଆଖି ବୁଜି ସେ ପଡିରହନ୍ତି ନିଜ ବଖରା ଭିତରେ ।

ତାଙ୍କର ଅର୍ଦ୍ଧନିମୀଳିତ ଚକ୍ଷୁ ଭିତରେ ସତେ ଅବା କଳ କଳ ହୋଇ ନାଚି ନାଚି ଗଡ଼ି ଚାଲେ କୋଲାବ ନଦୀର ରୂପେଲି ଜଳଧାରା । ଚାଲିଛି ସେ କେଉଁ ଆଦିମ କାଳରୁ, ଚାଲିଥିବ ବି ସବୁଦିନେ । ଉଦ୍ଦାମ, ଅବାରିତ ତାର ଗତି । ଲକ୍ଷ୍ମଣଙ୍କ ଚକ୍ଷୁ ଭିତରେ ଚଳଚ୍ଚିତ୍ର ପରି ଖେଳିଯାଏ କୋଲାବର ନାନା ରୂପ ଓ ନାନା ରଙ୍ଗ ।

ଲକ୍ଷ୍ମଣଙ୍କ ସମ୍ମୁଖରେ ସତେ ଅବା ଛିଡ଼ା ହୋଇଯାନ୍ତି ତାଙ୍କ ସ୍ତ୍ରୀ ମଙ୍ଗୁଳି । ଆହା ବିଚାରୀ ମଙ୍ଗୁଳି ! କାମ କରି କରି ଦିନ ରାତି ନିଅଣ୍ଟ ହୁଏ । ତାଙ୍କର ବା ସମୟ କାହିଁ ସ୍ୱାମୀ କେଉଁ କାମରେ ହାତ ଦେଇଛନ୍ତି ବୁଝିବାକୁ । ତାଙ୍କୁ ସେ ଯଥେଷ୍ଟ ଉପେକ୍ଷା କରିଛନ୍ତି । ତଥାପି ସେ ତ କେବେ କିଛି ଅଭିଯୋଗ କରି ନାହାନ୍ତି । ମନର ସକଳ ଯାତନାକୁ ଯେ ସେ ଚାପି ରଖିପାରିଛନ୍ତି ତାହାହିଁ ଲକ୍ଷ୍ମଣଙ୍କ ପ୍ରତି ଶାସ୍ତି । ଗାଁ କଥା, ସ୍ୱରାଜ କଥା ଚିନ୍ତା କରି କରି ସେ କଣ ଆପଣା ଘର ସଂସାର ପ୍ରତି କର୍ତ୍ତବ୍ୟ ଭୁଲିଇ ଯାଇନାହାନ୍ତି ? ଲକ୍ଷ୍ମଣଙ୍କ ହୃଦୟରୁ ଦୀର୍ଘ ନିଃଶ୍ୱାସ ଛୁଟି ଆସେ । ସତେ ତା ପୁଅ କୋଡ଼ିଏ ବର୍ଷ ଡେଇଁଲଣି, ଝିଅ କୌଶଲ୍ୟାକୁ ସତର ବର୍ଷ ହେଲଣି, ସେମାନଙ୍କର ବିବାହ ଆଜଯାକେ ହୋଇ ନାହିଁ ।

କିନ୍ତୁ ମୋଟିରୁ ଆରମ୍ଭ କରି ବୈପାରିଗୁଡ଼ାଯାଏ—ସେଇ ଧୂଳି ମଳିର ଗାଁ ଓ ତାର ଦୁଃଖ ଯାତନାରେ ଜର୍ଜ୍ଜରିତ ମଣିଷମାନେ, ସେମାନଙ୍କ ଦୁଃଖ ଫେଡ଼ିବା କ'ଣ ଅଧିକ ବଡ ଦାୟିତ୍ୱ ନୁହେଁ ? ସେଇ ପୈଶାଚିକ ଗତ୍ତିମ ପ୍ରଥା, ବେଠି ବେଗାରି, ଲାଞ୍ଚ, ମିଛ, ଅତ୍ୟାଚାରର ଦୂର କରିବା ପାଇଁ ବ୍ରିଟିଶ୍ ବିରୁଦ୍ଧରେ ଲଢ଼ିବା କ'ଣ ଅଧିକ ମହତ୍ତ୍ୱପୂର୍ଣ୍ଣ ନୁହେଁ । ପଦଦଳିତ ନିରୀହ ଲୋକଙ୍କ ମୁହଁରେ ସାମାନ୍ୟ ଟିକିଏ ହସ ଦେଖିଲେ କି ଆନନ୍ଦ ଲାଗେ ସତେ ! ହେ ପ୍ରଭୁ ମୋର ମୃତ୍ୟୁ ହେଉ ପଛେ, ସମାଜରେ ନିର୍ଯାତନା ନ ରହୁ ।

ଲକ୍ଷ୍ମଣ ସତେ ଅବା ଆଚମ୍ବିତ ହୋଇ ଆପଣାକୁ ପଚାରନ୍ତି, ସେ କପଟ ଓ କେବଠ୍ ଗାନ୍ଧୀ ମହାତ୍ମାଙ୍କ ଶିଷ୍ୟ ହେଲେ । ସେ ତ କେବେ ତାଙ୍କୁ ଦେଖି ନାହାନ୍ତି କି ତାଙ୍କର ସ୍ୱର ବ ଶୁଣିନାହାନ୍ତି । ତେବେ ସେ ବୁଡ଼ାଟା କି ସମ୍ମୋହନ ମନ୍ତ୍ର ଜାଣେ କେଜାଣି ନଚେ ଲକ୍ଷ୍ମଣ କାହିଁକି ଭାରତର ଲକ୍ଷ ଲକ୍ଷ ଜନତା ତା କଥାରେ ବାଇ । ବାସ୍ତବରେ ଅହିଂସାର ବଳ ବନ୍ଧୁକଠାରୁ କେତେ ଗୁଣେ ବେଶି । ଗୋଟିଏ ମହତ୍ ଉଦ୍ଦେଶ୍ୟ ନେଇ ଅହିଂସା ଉପାୟରେ ଯନ୍ତ୍ରଣା ସହିଯିବାରେ କେତେ ସୁଖ, କେତେ ତୃପ୍ତି । ସେଠି ମୃତ୍ୟୁ କେଡ଼େ ତୁଚ୍ଛ ! ଏଥିପାଇଁ ଭାରତମାତାର ମୁକ୍ତି ଲାଗି ଆପଣାର ମୃତ୍ୟୁକୁ ଆବାହନ ଜଣାଇବାକୁ ଇଚ୍ଛା ହୁଏ । ହେ ମୃତ୍ୟୁ ତୁମେ ଆସ । ପରାଧୀନତାର ଉଗ୍ର ଉତ୍ତାପରେ ମୁଁ ଶିଝିଗଲିଣି । ମୋତେ ତୁମର ବରଫ ହାତରେ ଆଲିଙ୍ଗନ କର । ମୋତେ ଏ ସଂସାରର ଦାବାନଳରୁ ରକ୍ଷା କର ।

ଭାବନାର ଅନ୍ତ ନଥାଏ । ଭାବୁ ଭାବୁ ସମସ୍ତ କୁଆଡ଼େ ଦୌଡ଼ି ପଳାଏ । ସନ୍ଧ୍ୟା ଆସେ । ଲକ୍ଷ୍ମଣ ରାମ ନାମ ଘୋଷନ୍ତି । ମାଉଳି ମା'ଙ୍କୁ ପ୍ରାର୍ଥନା କରନ୍ତି । ତା' ପରେ ଅସେ ରାତି । କିନ୍ତୁ ଭାବନାର ସୂତା ବଢ଼ି ଚାଲେ ।

ଉପରୁ ଆଦେଶ ଆସିଲା, ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦିଆଯିବ ମାର୍ଚ୍ଚ ୨୯ ତାରିଖରେ ।

ଫାଶୀ ! ଏ ପଦକ ଶୁଣି ଦେଲା ମାତ୍ରେ ଦେହ ଥରି ଉଠେ । ଫାଶୀ !! ତାର ପରିଣତି କ'ଣ ? କ୍ଷଣିକ ଛଟପଟ ଓ ତା ପରେ ସବୁ ସ୍ଥିର । ତାର ଅନ୍ୟ ନାମ ମୃତ୍ୟୁ ।

ମୃତ୍ୟୁର ଦୃଶ୍ୟ ତ ଲକ୍ଷ୍ମଣଙ୍କ ନିକଟରେ କିଛି କଳ୍ପନାର ବିଷୟ ନୁହେଁ । ହେଇ ସେଦିନ ମାଥିଲି ଥାନା ନିକଟରେ ତାଙ୍କରି ଆଖି ଆଗରେ ବନ୍ଧୁକ ଗୁଳିରେ ମରି ଶୋଇଲେ କେତେ ବନ୍ଧୁ, କେତେ ସହକର୍ମୀ । ନିମିଷକ ମଧ୍ୟରେ ସେମାନଙ୍କର ପ୍ରାଣବାୟୁ ଉଡ଼ିଯାଇଥିଲା । ହିନ ହିନ ଧରି ରୋଗାକ୍ରାନ୍ତ ହୋଇ ପର ହାତକୁ ସାହାଯ୍ୟ ପ୍ରାର୍ଥନା କରି ଚାଲେ

ଝୋଷାଣ୍ ହୋଇ ମରିବା ଅପେକ୍ଷା ଏ କ୍ଷଣିକ ଯନ୍ତ୍ରଣାର ମୃତ୍ୟୁ ଶ୍ରେୟସ୍କର ନୁହେଁ କି ? ସେ ପୁଣି ଅସାମାନ୍ୟ ମୃତ୍ୟୁ । ଦେଶମାତୃକାର ମୁକ୍ତି ପାଇଁ, କୋଟି ଜନତାର ଦୁଃଖାବସାନ ପାଇଁ ମୃତ୍ୟୁବରଣ ! ଭାଗ୍ୟବାନ ଲୋକ ପକ୍ଷରେ ହିଁ ଏହା ସମ୍ଭବ ।

କଳ୍ପନାରେ ଭାସି ଆସେ ଫାଶୀ କାଠରୁ ଝୁଲି ଆସିବ ଗୋଟିଏ ରଜ୍ଜୁ । ମୁଖକୁ ଘୋଡ଼ାଇ ଦିଆଯିବ କଳା କାନର ମୁଣିରେ । ବେକରେ ରଜ୍ଜୁର ଫାଶ ଚଢ଼ିବ । ତା ପରେ ତଳୁ କାଠ ପଟାଟି କାଢ଼ି ନିଆଯିବ । ଦଉଡ଼ିଟା ବେକକୁ ଚାପି ଧରିବ । ନିଶ୍ୱାସ ରୁଦ୍ଧ ହୋଇଯିବ । ଆକଟା ମାକଟା ଲାଗିବ । ହାତ ହୋଇଯିବ ମୁଠା ମୁଠା । ଚକ୍ଷୁର୍ଦ୍ଦିଗରେ ସବୁ ଯେପରି ସଂସାରଟା ଘୂରି ବୁଲିବ ଖୁବ୍ ବେଗରେ କର୍କଶ କାନଫଟା ରଡ଼ି କରି । ତା ପରେ ହଠାତ୍ ଠକ୍ କରି ସବୁ ଦଉଡ଼ଯାକ ଛୁଡ଼ିଯିବ ।

ଏ ତ ସାଧାରଣ କଥା । କିନ୍ତୁ ତନ୍ଦ୍ରା ଘୋରରେ ଏପରି ଛବି ମଧ୍ୟ ଭାସି ଉଠେ—ମୁଖାଟା ଖୋଲାଇ ବେକରେ ଦଉଡ଼ି ଗଳାଇ ଦେବାକ୍ଷଣି ସମସ୍ତ ଆତ୍ମାଦୀର୍ଘରେ ପ୍ରାପ୍ତିମନ୍ତ ହୋଇ ଭାରତମାତା ତାଙ୍କୁ ନିଜ କୋଳକୁ ଟାଣିନେବେ ଗୋଟିଏ କଅଁଳା ଶିଶୁ ପରି । ପୁଷ୍ପକ ବିମାନରେ ଯାଇ ସେମାନେ ବସିବେ । ବିମାନଟି ଉପରକୁ ଉଠିବ । ଉପରୁ ଦେଖିଲେ ଜଣାଯିବ ସଂସାର ଗୁଡ଼ାକ ଗୋଟିଏ ଟ୍ରେଟପିଲର ବାଲଟେନ ଭଳି । ସେଠୁ ନିଜର ମରଶରୀରଟାକୁ ଦେଖିଲେ ଖାଲି ହସ ହିଁ ମାଡ଼ିବ । ସେଇ ଉପରେ ସେ ଭ୍ରମଣ କରିବେ ତାରା ମଣ୍ଡଳରେ । ଜଞ୍ଜାଳ ନାହିଁ, ଯାତନା ନାହିଁ । ତାହାକୁ କି କୁହାଯାଏ ମୁକ୍ତି ?

ମାର୍ଚ୍ଚ ୨୮ ତାରିଖ । କାଲି ସକାଳୁ ଲକ୍ଷ୍ମଣଙ୍କର ଫାଶୀ ହେବ । କାରାଗୃହ ସାରା ମାରିବ, ନିସ୍ତବ୍ଧ । କାହା ତୁଣ୍ଡରୁ କଥା ସ୍ଫୁରୁ ନାହିଁ । ଅଜଣା ଅଶୁଣା ଭୟ ମାଡ଼ି ଆସୁଛି । ତେଣେ କୋରାପୁଟ ଜେଲ୍‌ରେ ମଧ୍ୟ ସେଇ ଦଶା । ସମସ୍ତେ ଜାଣିଛନ୍ତି ରାତି ପାହିଲେ ଲକ୍ଷ୍ମଣ ଆଉ ନଥିବେ । ଉଭୟ କାରାଗୃହର ସ୍ଥାନେ ସ୍ଥାନେ ଉତ୍ତେଜନା ବି ସୃଷ୍ଟି

ହେଲା । ଲକ୍ଷ୍ମଣଙ୍କର କେତେକ ଯୁବକ ବନ୍ଧୁ ଠିକ୍ କଲେ ଯେ ଲକ୍ଷ୍ମଣଙ୍କୁ ଠିକ୍ ଫାଶୀ ହେଲା ସମୟରେ ସେମାନେ ମଧ୍ୟ ଆତ୍ମହତ୍ୟା କରିବେ । କଥାଟା ପ୍ରଘଟ ହୋଇଗଲା । ବୟସରେ ବଡ଼ମାନେ ଚିନ୍ତିତ ହୋଇପଡ଼ିଲେ । ଏପରି ଉତ୍ତେଜନାର ପରିଣତି ଆହୁରି ଦୁଃଖାବହ ହୋଇଯିବ । ଏତିକିରେ ତ ସ୍ୱାଧୀନତା ଆନ୍ଦୋଳନ ଶେଷ ହୋଇଯିବ ନାହିଁ । ଭବିଷ୍ୟତରେ ଆହୁରି ଆତ୍ମବଳ ଦରକାର ପଡ଼ିପାରେ । ବହୁ ବୁଝାଶୁଝା ପରେ ଯୁବକମାନେ ଚରମ ପଦକ୍ଷେପରୁ ନିବୃତ୍ତ ହେଲେ ।

ସନ୍ଧ୍ୟା ଆସି ଉପଗତ ହେଲା । ଲକ୍ଷ୍ମଣ ସକାଳୁ ଆଖି ବୁଜି ରାମ ନାମ ଜପୁଛନ୍ତି । ମଝିରେ ମଝିରେ ସେ "ବୈଷ୍ଣବ ଜନତୋ......" ଭଜନ ମଧ୍ୟ ଆବୃତ୍ତି କରୁଛନ୍ତି ।

ରାତିରେ ତାଙ୍କୁ ପଚରାଗଲା, ସେ କାହା ସହିତ କିଛି କଥାବାର୍ତ୍ତା ହେବା ଚାହାନ୍ତି କି ? କଂଗ୍ରେସ ନେତାମାନଙ୍କ ସହିତ ସେ ଦେଖାହେବା ପାଇଁ ଇଚ୍ଛା କଲେ । ସେତେବେଳକୁ ସମସ୍ତ ଆଖିରେ ଲୁହ, ଗୃହ ଭିତରେ କୋହ । ବିଶ୍ୱାସରାୟ ଓ ରାଧାମୋହନ ଯିବାକୁ ମନା କରିଦେଲେ । ସେମାନେ ଏତେ ଦୁଃଖରେ ମ୍ରିୟମାଣ ଯେ ଲକ୍ଷ୍ମଣଙ୍କୁ ଦେଖିଦେଲା ମାତ୍ରେ ଆବେଗ ପ୍ରବଳ୍ୟରୁ ହୁଏତ ଗୃହ ଫାଟିଯାଇ ପାରେ କିନ୍ତୁ ଲକ୍ଷ୍ମଣଙ୍କ ଅନ୍ତିମ ଇଚ୍ଛାକୁ ସମ୍ମାନ ଦେଖାଇବାକୁ ହେବ । ଶେଷରେ ଶ୍ରୀ ସଦାଶିବ ତ୍ରିପାଠୀ ସାହସ ସଞ୍ଚୟ କରି ଲକ୍ଷ୍ମଣଙ୍କ କୋଠରି ଆଡ଼କୁ ଆଗେଇଲେ । ଶ୍ରୀ ସଦାଶିବ ତ୍ରିପାଠୀ ପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ ।

ସେ ଦେଖିଲେ ବନ୍ଦୀଶାଳ ଭିତରେ ଲକ୍ଷ୍ମଣ ଆଣ୍ଠୁମାଡ଼ି ବସିଛନ୍ତି । ଚକ୍ଷୁ ମୁଦ୍ରିତ । ଯୋଡ଼ ହସ୍ତ । ତୁଣ୍ଡରୁ ବାହାରୁଛି ଖାଲି ରାମ ନାମ । କି ଗମ୍ଭୀର, କି ଉଦାସ, କି ପ୍ରାଣବନ୍ତ ସେ ଦୃଶ୍ୟ ! ନିର୍ଜ୍ଜନ, ନିସ୍ତବ୍ଧ ରାତିରେ ଆବେଗଭରା କଣ୍ଠରୁ ଝରି ଆସୁଛି ରାମ ନାମ । ସଦାଶିବ ତ୍ରିପାଠୀଙ୍କ ପାଟିରୁ ପଦେ ହେଲେ କଥା ଫୁଟିଲା ନାହିଁ । ସେ ଅପେକ୍ଷା କଲେ । କିନ୍ତୁ କୋଲାବ ନଦୀର କଳ କଳ ନିନାଦ ପରି

ରାମ ନାମ ଲକ୍ଷ୍ମଣଙ୍କ ତୁଣ୍ଡରୁ ସତେ ଯେପରି ଯୁଗ ଯୁଗ ଧରି ଛୁଟି ଚାଲିଛି । ତାର ଯେପରି ଶେଷ ନାହିଁ ।

କିଛି ସମୟ ପରେ ସଦାଶିବ ତ୍ରିପାଠୀ ଆବେଗ ରୁଦ୍ଧ କଣ୍ଠରେ ଡାକିଲେ, "ଲକ୍ଷ୍ମଣ !"

ଧୀରେ ଧୀରେ ଲକ୍ଷ୍ମଣ ଆଖି ଖୋଲିଲେ । ସଦାଶିବଙ୍କୁ ଦେଖି ସ୍ମିତ ହସିଲେ ଏବଂ ଉଠିପଡ଼ି ନମସ୍କାର କଲେ ।

ସଦାଶିବ କହିଲେ, "ଲକ୍ଷ୍ମଣ ! କିଛି କହିବ ? ତମ ଘରକୁ କିଛି ଖବର ଦେବାର ଅଛି ?"

ଲକ୍ଷ୍ମଣ ଧୀର ଗମ୍ଭୀର ସ୍ୱରରେ ଉତ୍ତର ଦେଲେ, "ମୋର ଆଉ କିଛି କହିବାର ନାହିଁ । ମୋର ଅନେକ ଭାଇ ତ ମଲେ । ଅନେକ ଜେଲ୍‌ରେ ସଢ଼ୁଛନ୍ତି । ନେତାମାନେ ମଧ୍ୟ ଜେଲ୍‌ରେ ଖଟୁଛନ୍ତି । ସେ ପରିସ୍ଥିତିରେ ମୁଁ ଅଧିକ କଣ କହିବି ବା ମୋ ପାଇଁ ଦୁଃଖ କରିବି କାହିଁକି ?"

ଟିକଏ ନୀରବତା ପରେ ସେ କହିଲେ, "କିନ୍ତୁ ଗୋଟିଏ କଥା ! ଆମେ ଯେଉଁ ସ୍ୱରାଜ ପାଇଁ ଲଢ଼ୁଛେ ସେଇ ସ୍ୱରାଜକୁ ଦେଖି ନ ପାରିବାରୁ ମନରେ ଟିକଏ ଦୁଃଖ । ଏତିକି ଅଭାବ ଏ ଜୀବନରେ ରହିଗଲା ।"

ଲକ୍ଷ୍ମଣ ପୁଣି କହିଲେ, "ମୋ ପୁଅ ଝିଅଙ୍କୁ ବିବାହ କରାଇ ଦେବେ ।"

ସଦାଶିବ ତ୍ରିପାଠୀ କହିଲେ, "ଲକ୍ଷ୍ମଣ ତୁମେ ଧନ୍ୟ ! ଭାରତମାତାର ତୁମେ ଯୋଗ୍ୟ ପୁଅ ।" ସଦାଶିବ ବାବୁ ଆଉ କିଛି କହିପାରିଲେ ନାହିଁ । ତାଙ୍କ କଣ୍ଠ ମଧ୍ୟ ବାଷ୍ପ ଗଦ୍‌ଗଦ୍‌ ହୋଇଗଲା । ସେ ଫେରି ଆସିଲେ ।

X X X

୧୯୪୩, ମାର୍ଚ୍ଚ ୨୯ ତାରିଖ, ଭୋର ପାଞ୍ଚଟା । ରାତି ସାରା କେହି ଶୋଇ ନାହାନ୍ତି । କଥାବାର୍ତ୍ତା ମଧ୍ୟ ବନ୍ଦ । ଚାରିଆଡ଼େ ଦୁଃଖ ଓ ଭୟ ରାଜୁତି କରୁଛି ।

ଲକ୍ଷ୍ମଣଙ୍କ ବଖରାରୁ ବନ୍ଦେ ମାତରମ୍ ନାମ ଶୁଣାଯାଉଛି । ଜୀବନର ଶେଷ ପର୍ଯ୍ୟନ୍ତ ସେ ଅବିଚଳିତ ।

କବାଟ ଖୋଲିଲା । ଦୁଇଜଣ ପ୍ରେତରୂପୀ ମାନବ ଲକ୍ଷ୍ମଣଙ୍କ ଦୁଇ ଆଡ଼େ ଛିଡ଼ା ହେଲେ । ଲକ୍ଷ୍ମଣ ବିନା ବାକ୍ୟ ବ୍ୟୟରେ ଆଗେଇଲେ । ଫାଶୀ ଖୁଣ୍ଟ ଟିକିଏ ଦୂରରେ ଅଛି, ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟ୍ ଲକ୍ଷ୍ମଣଙ୍କ ନିଜର ଇଚ୍ଛା ବ୍ୟକ୍ତ କରିବାକୁ ଅନୁରୋଧ କଲେ ।

ଲକ୍ଷ୍ମଣ ଆପଣା ଜୀବନର ସକଳ ସାଧନା, ତପସ୍ୟା ଓ ଦୃଢ଼ତାର ଅନ୍ତିମ ଲକ୍ଷ୍ୟକୁ ଦୁଇଟି ବାକ୍ୟରେ ବ୍ୟକ୍ତ କଲେ ବଡ଼ ପାଟିରେ, "ସୂର୍ଯ୍ୟ ପଦ୍ମ ସତ୍ୟ ହୋଇଥାଏ, ଚନ୍ଦ୍ର ପଦ୍ମ ସତ୍ୟ ହୋଇଥାଏ, ତେବେ ଭାରତମାତା ଯେ ସ୍ୱାଧୀନ ହେବ ତାହା ମଧ୍ୟ ସେହିପରି ସତ୍ୟ ହେବ । ......ଏଥର ଦେଖାଅ କେଉଁଠି ରହିଛି ତୁମର ଫାଶୀ ଖୁଣ୍ଟ ।"

X X X

ତାର ଅଳ୍ପ ସମୟ ପରେ ପୃଥିବୀଟା ସତେ ଯେପରି ଏକ ପ୍ରବଳ ଭୂମିକମ୍ପରେ ଦୋହଲି ଗଲା । ମଣିଷ, ବୃକ୍ଷଲତା, ଜୀବଜନ୍ତୁ ସମସ୍ତେ କମ୍ପି ଉଠିଲେ । ଅନ୍ଧାର ଘୋଟିଗଲା । ସମସ୍ତଙ୍କର ଗଳାକୁ କିଏ ଯେପରି ମାଡ଼ି ବସିଲା । ସେମାନେ ଆକଟା ମାକଟା, ଅଣନିଃଶ୍ୱାସୀ ହୋଇ ଉଠିଲେ । ହାତ ମୁଠା ମୁଠା ହୋଇଗଲା । ତା ପରେ ସବୁସ୍ଥିର । ପବନ ବହିଲା ନାହିଁ । ଗଛର ଡ଼ାଳ ହଲିଲା ନାହିଁ ।

କିନ୍ତୁ ନିମିଷକ ମଧ୍ୟରେ ଭୂମିକମ୍ପ ବନ୍ଦ ହେଲା । ପୃଥିବୀ ଆଲୋକିତ ହେଲା । ପବନ ବହିଲା । କୋଇଲି କୂଜନ କଲା । ସମସ୍ତେ ଜାଗି ଉଠିଲେ, ଯେ ଯାହାର ସ୍ଥାନରେ ଯେମିତି ଥିଲେ ସେମିତି । କିନ୍ତୁ ମଣିଷଙ୍କ ଏତେବଡ଼ ମେଳରୁ ଜଣେ ମାତ୍ର ଉଭେଇ ଯାଇଥିଲେ ।

ସଂସାରର ସକଳ ପ୍ରାଣୀ ଖୋଜି ବୁଲିଲେ, ଲକ୍ଷ୍ମଣ କାହିଁ ? କାହିଁ ଲକ୍ଷ୍ମଣ ?



## ୧୯୪୨ ଅଗଷ୍ଟ ୨୧ ତାରିଖ ମାତଲି ଥାନା ଘଟଣା ପାଇଁ ପୋଲିସ୍‌ଙ୍କ ଦ୍ୱାରା ଅଭିଯୁକ୍ତ ବ୍ୟକ୍ତିଙ୍କ ତାଲିକା (କୋର୍ଟଙ୍କ ରାୟ ଅନୁଯାୟୀ ସଜ୍ଜିତ)

| ନାମ | ପିତାଙ୍କ ନାମ | ବୟସ | ବୃତ୍ତି | ଜାତି | ଗ୍ରାମର ନାମ |
|---|---|---|---|---|---|
| **ଫାଶୀଦଣ୍ଡ** | | | | | |
| ଲକ୍ଷ୍ମଣ ନାୟକ | ପଡଲମ ନାୟକ | ୪୨ | କୃଷି | ଭୂମିଆ | ଟେଣ୍ଟୁଲିଗୁମ୍ମା |
| **ଯାବଜ୍ଜୀବନ କାରାଦଣ୍ଡ ଓ ୯ ବର୍ଷ ସଶ୍ରମ କାରାଦଣ୍ଡ** | | | | | |
| ବଳରାମ ପୂଜାରୀ | ହରି ପୂଜାରୀ | ୩୫ | କୃଷି | ଭୂମିଆ | ମାତଲି |
| ଅର୍ଜ୍ଜୁନ ନାଇକ | ସନଆ ନାଇକ | ୩୨ | କୃଷି | ଭୂମିଆ | ଟେଣ୍ଟୁଲିଗୁମ୍ମା |
| ଅର୍ଜ୍ଜୁନ ନାଇକ | ଚନ୍ଦ୍ର ନାଇକ | ୪୮ | କୃଷି | ଭୂମିଆ | ଉଦୟଗିରି |
| ସମ୍ବାରୁ ନାଇକ | ଇର୍ମା ନାଇକ | ୩୩ | କୃଷି | ଭୂମିଆ | ନୂଆଗୁଡା |
| କେନ୍ଦ୍ରୁ ନାଇକ | ବାଘ ନାଇକ | ୩୪ | କୃଷି | ଭୂମିଆ | ସବରିଗୁଡା |
| ଖ୍ରାମ ନାଇକ | ଧାନବନ୍ଧୁ ନାଇକ | ୪୭ | କୃଷି | ଭୂମିଆ | କାଳଆଗୁଡା |
| ଜଗନ୍ନାଥ ନାଇକ | ବଙ୍ଗଳା ନାଇକ | ୩୦ | କୃଷି | ଭୂମିଆ | କାଲିଆଗୁଡା |
| ଉଦୟନାଥ ଓଡ | ମଙ୍ଗଳ ଓଡ | ୨୮ | କୃଷି | ଭୂମିଆ | ବଂଶୀଆପାଟ |
| ନିତ୍ୟାନନ୍ଦ ଡମ୍ବାଳ | ବଲ୍ଲଭ ଡମ୍ବାଳ | ୨୪ | କୃଷି | ଡମ୍ବାଳ | କୋଡଗୁଡା |
| ଚଇତନ ପୂଜାରୀ | ଚନ୍ଦ୍ର ପୂଜାରୀ | ୨୨ | କୃଷି | ଭୂମିଆ | ସାନଗୁମ୍ମା |

| ନାମ | ପିତାଙ୍କ ନାମ | ବୟସ | ବୃତ୍ତି | ଜାତି | ଗ୍ରାମର ନାମ |
|---|---|---|---|---|---|
| ଘାନବନ୍ଧୁ ପୂଜାରୀ | ବାଧ୍ନା ପୂଜାରୀ | ୪୫ | କୃଷି | ଭୂମିଆ | ସାନଗୁମ୍ମା |
| ଚନ୍ଦ୍ର ପୂଜାରୀ | ମୁକୁନ୍ଦ ପୂଜାରୀ | ୫୦ | କୃଷି | ଭୂମିଆ | ସାନଗୁମ୍ମା |
| ବୁଲୁ ଭୂମିଆ | ମୃଦୁ ଭୂମିଆ | ୨୯ | କୁଲି | ଭୂମିଆ | ସାନଗୁମ୍ମା |
| ବଗନ ପୂଜାରୀ | ଡମ୍ବରୁ ପୂଜାରୀ | ୨୮ | କୃଷି | ଭୂମିଆ | ସାନଗୁମ୍ମା |
| ରଘୁନାଥ ଭୂମିଆ | ବମା ଭୂମିଆ | ୩୮ | କୃଷି | ଭୂମିଆ | ସାନଗୁମ୍ମା |
| ଅର୍ଜ୍ଜୁନ ପୂଜାରୀ | ଡମ୍ବ ପୂଜାରୀ | ୩୨ | କୃଷି | ଭୂମିଆ | ସାନଗୁମ୍ମା |
| ସନୁ ଡମ୍ବ | ଜୟରାମ ଡମ୍ବ | ୩୭ | କୃଷି | ଡମ୍ବ | ସାନଗୁମ୍ମା |
| ଚଦଲମ ନାୟକ | ମଙ୍ଗଳ ନାୟକ | ୩୫ | କୃଷି | ଭୂମିଆ | କାଲଆଗୁଡ଼ା |
| ବଳରାମ ଭୂମିଆ | ଶ୍ୟାମ ଭୂମିଆ | ୩୮ | କୃଷି | ଭୂମିଆ | ଚେମରପଲ |
| ଭିକା ବଇରାଗୀ | ରାମ ବଇରାଗୀ | ୩୩ | କୃଷି | ହଳୁଆ | ପୂଜାରୀଗୁଡ଼ା |
| ଧନୁର୍ଜୟ ପୂଜାରୀ | ଅଦୁ ପୂଜାରୀ | ୩୭ | କୃଷି | ଭୂମିଆ | ବାକଲଗୁଡ଼ା |
| ସମ୍ବାରୁ ନାଇକ | ଭାଗା ନାଇକ | ୩୮ | କୃଷି | ଭୂମିଆ | ପିଠା ଥୁମ୍ବା |
| ଗୋପୀନାଥ ପୂଜାରୀ | ଚନ୍ଦ୍ର ପୂଜାରୀ | ୩୨ | କୃଷି | ଭୂମିଆ | ସାନଗୁମ୍ମା |
| ବନସିଙ୍ଗ ଭୂମିଆ | ମୁକୁନ୍ଦ ଭୂମିଆ | ୪୦ | କୃଷି | ଭୂମିଆ | ଛେଲୁଲଗୁମ୍ମା |
| ଗୁରୁ କୋଟିଆ | ସନଆ କୋଟିଆ | ୨୮ | କୃଷି | କୁଟିଆ | ଚିମିଣିପୁର |

| ନାମ | ପିତାଙ୍କ ନାମ | ବୟସ | ବୃତ୍ତି | ଜାତି | ଗ୍ରାମର ନାମ |
|---|---|---|---|---|---|
| ନରସିଂ ଚଲଣ | ସମାରୁ ଚଲଣ | ୩୭ | କୃଷି | ଭୂମିଆ | ବେଜୁଣିଗୁଡ଼ା |
| କୁସୁନ ମୁଜାଶି | ଗୋବନ୍ଦ ମୁଜାଶି | ୩୫ | କୃଷି | ଭୂମିଆ | ବଂଶୀଆଘାଟ |
| ଭଲୁ ଡମ୍ବ | ମଙ୍ଗଳ ଡମ୍ବ | ୩୭ | ଶ୍ରମିକ | ଡମ୍ବ | ଛେଲୁକଗୁମ୍ଫା |
| ଗୁରୁ ଗୌଡ଼ | ନେଲା ଗୌଡ଼ | ୪୦ | କୃଷି | ଗଉଡ଼ | କୁପୁଲଗୁଡ଼ା |
| କୋଣା ମାଡ଼କାମି | ଅର୍ଜୁନ ମାଡ଼କାମି | ୪୦ | କୁଲି | ଗଉଡ଼ | କୋଟାଇପଲି |
| ହାଣ୍ଡିରାମ କୋଟିଆ | ଅର୍ଜୁନ କୋଟିଆ | ୪୦ | କୃଷି | ଗଉଡ଼ | ଅଟଲଗୁଡ଼ା |
| ସମାରୁ ଭୂମିଆ | ବୁଦୁରୁ | ୩୭ | କୃଷି | ଗଉଡ଼ | ମଜାରଗୁଡ଼ା |
| ହାଣ୍ଡିରାମ ଚଣ୍ଡାଳ | ରମଗିରଆ ଢକାଶି | ୩୫ | କୁଲି | ଚଣ୍ଡାଳ | ଆମ୍ବଗୁଡ଼ା |
| କୋଣ୍ଡି ସୁନାଝରିଆ | ମଦନ ସୁନାଝରିଆ | ୨୭ | କୁଲି | ସୁନାଝରିଆ | ପାରେଙ୍ଗା |
| ସନସ୍ୱାମି ଭୂମିଆ | ଗସ୍ୱା ଭୂମିଆ | ୩୭ | କୃଷି | ଭୂମିଆ | ଉଦୟଗିରି |
| ମଙ୍ଗଳ ମାଡ଼କାମି | ରାମ ମାଡ଼କାମି | ୪୦ | କୃଷି | ଭୂମିଆ | ସବରଗୁଡ଼ା |
| ବୃଦ୍ଧୁ କମାର | ନରସିଂ କମାର | ୩୦ | କୁଲି | କମାର | ଉଦୟଗିରି |
| ସୋମନାଥ ଭୂମିଆ | ଧନ ଭୂମିଆ | ୩୦ | କୁଲି | ଭୂମିଆ | ଉଦୟଗିରି |
| କୃଷ୍ଣଚନ୍ଦ୍ର ବଶୋଇ | ଦୟାନିଧି ବଶୋଇ | ୨୫ | ଶିକ୍ଷକ | ପାଇକ | ଉଦୟଗିରି |
| ସୋମନାଥ ଭୂମିଆ | ଜଗନ୍ନାଥ ଭୂମିଆ | ୩୦ | କୃଷି | ଭୂମିଆ | କୋଟ୍‌ପାଡ଼ |

| ନାମ | ପିତାଙ୍କ ନାମ | ବୟସ | ବୃତ୍ତି | ଜାତି | ଗ୍ରାମର ନାମ |
|---|---|---|---|---|---|
| ସୋନ ସମର ନାଇକ | ଅର୍ଜୁନ ନାଇକ | ୩୦ | କୃଷି | କୋଟିଆ | ଅଠଳଗୁଡ଼ା |
| ହର ମୁଜାସି | ଶୁକ୍ରା ମୁଜାସି | ୪୦ | କୁଲି | କୋଟିଆ | ଅଠଳଗୁଡ଼ା |
| ମଙ୍ଗରାଜ ନାଇକ | ଲଛମନ ଗଉଡ଼ | ୨୮ | କୃଷି | ଗୌଡ଼ | ଚମ୍ପାଝର |
| ଭର ନାଇକ | ମଙ୍ଗଳ ନାଇକ | ୪୨ | କୃଷି | ଭୂମିଆ | କୋଠାପାଲି |
| ବଳରାମ ଭୂମିଆ | ଚନ୍ଦ ଭୂମିଆ | ୨୪ | କୃଷି | ଭୂମିଆ | ବଂଶୀଆଘାଟ |
| ଗୁରୁ ନାଇକ | ଅଇଠ ଦୁମ୍ବା | ୩୩ | କୃଷି | ଦୁମ୍ବା | ରେଙ୍ଗାଓ୍ୱାଡ଼ା |
| କଲାକୁର ଅର୍ଜୁନ | ଖ୍ରାମ | ୪୦ | କୃଷି | ଭୂମିଆ | ବନ୍ଦରପଙ୍କ |
| ନରସିଙ୍ଗ ଦୁମ୍ବା | ଲକ୍ଷଣ ଦୁମ୍ବା | ୩୫ | କୃଷି | ରଣା | କୋଠାମେଣ୍ଟା |
| ମୋହନରାମ ସିଂ ମାଡ଼କାମି | ଗଙ୍ଗା ମାଡ଼କାମି | ୪୦ | କୃଷି | ଭୂମିଆ | ଟଙ୍ଗୁଡ଼ା |

## ପ୍ରମାଣ ନଥିବାରୁ ଖଲାସ ପାଇଥିବା ବ୍ୟକ୍ତିଙ୍କ ନାମ

| | | | | | |
|---|---|---|---|---|---|
| ଲଇଛନ ଭୂମିଆ | ଗୁରୁ ଭୂମିଆ | ୩୬ | କୃଷି | ଭୂମିଆ | ସାନଗୁମ୍ମା |
| ଅର୍ଜୁନ ଭୂମିଆ | ବେଣୁ ଭୂମିଆ | ୨୫ | କୃଷି | ଭୂମିଆ | ସାନଗୁମ୍ମା |
| ସମ୍ବାରୁ ଭୂମିଆ | ଘାସ ଭୂମିଆ | ୪୦ | କୃଷି | ଭୂମିଆ | ସାନଗୁମ୍ମା |
| ସନଆ ଭୂମିଆ | ଅର୍ଜୁନ ଭୂମିଆ | ୪୦ | କୃଷି | ଭୂମିଆ | ସାନଗୁମ୍ମା |

## ମାଥିଲି ଥାନା ସତ୍ୟାଗ୍ରହବେଳେ ଗୁଳିକାଣ୍ଡରେ କେତେ ମୃତବ୍ୟକ୍ତିଙ୍କ ନାମ

| ନାମ | ଗ୍ରାମର ନାମ |
|---|---|
| ନକୁଳ ମାଡ଼କାମି | ସରଗିଗୁଡ଼ା |
| ବ. ସି. ନାୟକ | ସମଗ୍ର |
| ଲିଙ୍ଗ ଭୂମିଆ | ଟିମସଗୁଡ଼ା |
| ଅର୍ଜ୍ଜୁନ କୁଟିଆ | କୁକୁଡ଼ାଗୁଡା |
| ନରସିଂ ଡମ୍ବ | ନୂଆଗୁଡ଼ା |
| ସମରାୟ ନାଇକ | ମଞ୍ଜାରଗୁଡା |
| ଗୋପୀ ପୂଜାରୀ | ସାନଗୁମ୍ମା |
| ଗୁରୁ କୋଟିଆ | ଟିମସପୁଟ |
| ବଳରାମ ଭୂମିଆ | ଟେମୁରୁପାଲି |

— — —

## ଆଜୀବନ କାରାଦଣ୍ଡ ଭୋଗ କଲାବେଳେ ଜେଲ ଭିତରେ ମୃତ୍ୟୁବରଣ କରିଥିବା ବ୍ୟକ୍ତିଙ୍କ ନାମ

(ବୟସ ଓ ଗ୍ରାମ ସହିତ)

| | | |
|---|---|---|
| ଜଗନ୍ନାଥ ପ୍ରଭୁ | ୨୮ | ବଂଶୀଆଧାଟ |
| ଅର୍ଜ୍ଜୁନ ନାୟକ | ୪୮ | ଜଗପୁରିଗିରି |
| ଚଇତନ ପୂଜାରୀ | ୨୮ | ସାନଗୁମ୍ମା |
| ଚନ୍ଦ୍ର ପୂଜାରୀ | ୫୦ | ସାନଗୁମ୍ମା |
| ନରସିଂ ଦୁର୍ବା | ୩୫ | କୋଟାମେଟା |
| ଅର୍ଜ୍ଜୁନ ପୂଜାରୀ | ୩୨ | ସାନଗୁମ୍ମା |
| କେଣ୍ଡ୍ରେ ସୁନାଝରିଆ | | କଆଁଗ |

— — —

## ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବା ସଂକ୍ରାନ୍ତରେ ଗିରଫ ହୋଇ ଜେଲଦଣ୍ଡ ଭୋଗିବାବେଳେ ମୃତ୍ୟୁବରଣ କରିଥିବା କେତେକ ବ୍ୟକ୍ତିଙ୍କ ନାମ (ଗ୍ରାମ ନାଁ ସହିତ)

| | |
|---|---|
| ଲକ୍ଷ୍ମଣ ସମରଥ | ସାରଙ୍ଗପଲ୍ଲୀ |
| ଶୁକ୍ରୁ ଗୋଟେ | ଜାଉଁଳଗୁଡ଼ା |
| ଗୋବନ୍ଦ କୋପେ | ଫଲଙ୍ଗା |
| ଚନ୍ଦ୍ର ମାଝି | ନାୟକଗୁଡ଼ା |
| ଦାମ ପୂଜାରୀ | ଚଲ୍ଲଣଗୁଡ଼ା |

———

APPENDIX

**In the Court of the Additional Sessions Judge, Koraput**

Sessions Case No 18 of 1942

The 13th day of November 1942

King Emperor (Matili P. S. Case No 58 of 1942)—
Complainant

Lokhan Naiko and 53 others.....................Accused

Case committed by—Sri Somanath Misra,
Treasury Deputy Magistrate

Present (Judge) V. Ramanathan, Esquire, I. C. S
Additional Sessions Judge, Koraput

Finding the of Judge

Accused No. 1 is found guilty U/s 302 I P.C., 147 I. P. C. U/s 5 D. I. Rules, Rule 35 D. I. Rules.

Accsued No. 2-10, 12-17, 19, 22-54 are found guilty under section 302 I.P.C read with section 149 I.P.C, 147 I. P. C. under rule 35 D. I. Rules.

Accused Nos. 11, 18, 20 and 21 not found guilty.

## Sentence or order

Accused No. 1. Sri Lokhan Naiko is convicted under Section 302 I.P.C. and sentenced to death subject to confirmation by the Hon'ble High Court. He is also convicted under section 147 I. P. C. of committing a prejudicial act under rule 38 (5) D. I. Rules and of approaching the Police station, Mathili with enter to damage it under rule 35 Defence of India Rules and is convicted of these offence and no separate sentence is passed.

Accused Nos. 2-10, 12-17, 19, 22-54 are convicted under section 302 I P. C. read with 149 I. P. C. and each sentenced to transportation for life. They are convicted U/s 147 I. P. C. and each sentenced to R. I. for 2 (Two) years. They are also convicted U/s. 35 of the Defence of India Rules and sentenced to R. I. for 7 (seven) years each. All the above sentences will run concurrently.

Accused Nos. 11, 13, 20, 21 are found not guilty of the charges tried against them and acquitted to the same and they are directed to be sent at liberty unless they are required to answer any other charges.

(Rao Saheb A. Appalaswamy Naidu, Public Prosecutor, Koraput District, Jeypore conducted the prosecutic and Shri R. Jagannatha Rao, Advocate, Jeypore defende the accused persons having been engaged by the Crown)



"ଆମେ ଅନ୍ୟାୟକୁ ସହିବୁ ନାହିଁ । ଅନ୍ୟାୟ ଟିକସ ଦେବୁ ନାହିଁ । ବୋଝ ବୋହିବାକୁ ବେଠିଆ ଦେବୁ ନାହିଁ । ଯେ ଯେତେ ବଡ଼ 'ଅଧିକାରୀ' ହେଉ, ଆମେ ଅସହଯୋଗ କରିବୁ । ଆମେ ସହ୍ୟ କରିବୁ । ଆମ ମନଦୁଃଖ ବଡ଼ ପାଟିରେ କହିବୁ । ତୁମ ବିରୁଦ୍ଧରେ ହଜାର ସ୍ୱରରେ ପାଟି କରିବୁ । ତୁମେ ଶୁଣ ଅବା ନ ଶୁଣ । ତୁମେ ଆମକୁ ଧର, ମାର, ଜେଲ୍ ଦଅ. ହାଣ, କାଟ ଆମେ ଆପତ୍ତି କରିବୁ ନାହିଁ । ତୁମ ଉପରକୁ ହାତ ଟେକିବୁ ନାହିଁ । ଗାନ୍ଧି ମହାତ୍ମା ମନା କରିଛନ୍ତି । ଆମେ ମାଡ଼ ଖାଇବୁ, ମାଡ଼ ଦେବୁ ନାହିଁ । କିନ୍ତୁ ତୁମ କଥା ମାନିବୁ ନାହିଁ ।